








ଲିପଟନ ଗ୍ଲୁକୋ ମିଲ୍କ ବିସ୍କୁଟ

ଦୁଧ ମିଠାଇର ସମ୍ମିଶ୍ରଣ ସୁଆଦ୍‌ ଏବେ ପୁଷ୍ଟିକର



Anil Kumar Panigrahi

ସ୍ୱାଦର କରାଉଛନ୍ତି!

ନୂଆ

# ମେଡିକର

## ଉକୁଣି ନିର୍ମୂଳ କରିବାର ସରଳ, ନିରାପଦ, ପ୍ରଭାବୀ ଉପାୟ









ପ୍ରଭାବଶାଳୀ ହୋଇ ନ ଥିବା ପୁରୁଣା ଉପାୟ ଭୁଲି ଯାଆନ୍ତୁ । ମେଡିକର ନିର୍ଭର କରନ୍ତୁ ।
ଉକୁଣି ଉପଦ୍ରବରୁ ନିଶ୍ଚିନ୍ତ ହୋଇଯାଆନ୍ତୁ ।

### ସରଳ



ମେଡିକରକୁ ଶାମ୍ପୁ ଭଳି ଲଗାଇ ୩ ମିନିଟ ପରେ ଧୁଅନ୍ତୁ, ପୁଣି ଆଉ ଥରେ ସେହିଭଳି କରନ୍ତୁ ।

### ନିରାପଦ



ମେଡିକର ଗଭୀର ଅନୁସନ୍ଧାନ ଓ ପରୀକ୍ଷା-ନିରୀକ୍ଷା ପରେ ପ୍ରସ୍ତୁତ କରାଯାଇଛି, ଶତ ପ୍ରତିଶତ ସୁରକ୍ଷିତ ।

### ପ୍ରଭାବୀ



ମେଡିକର ମାତ୍ର ୨ ମିନିଟରେ ଉକୁଣିଙ୍କୁ ନଷ୍ଟ କରିଦିଏ ।

**ମେଡିକର** ଉକୁଣି ନିପାତରେ ଆପଣଙ୍କ ରକ୍ଷକ
ସରଳ·ନିରାପଦ·ପ୍ରଭାବୀ

ଉତ୍ପାଦକ : ରିଚାର୍ଡସନ ହିନ୍ଦୁସ୍ତାନ ଲି.
ଭିକ୍ସ ଓ କ୍ଲିଅରେସିଲ୍'ର ନିର୍ମାତା

everest/88/RHL/81 or

ରେଣୁ ମନ ଦୁଃଖୀ, ଖେଳେ ଲାଗି ଦିଅନ୍ତି ଠକି
ଖେଳୁଥାଆନ୍ତି ଅନ୍ୟମାନେ ସିଏ ବସେ ଝାଙ୍କି।
ଭାବି ଭାବି ସ୍ଥିର କଲା ସିଏ ତ ନୁହେଁ ବୋକି
ମଜାଳିଆ ଖେଳ ଖେଳିବ ଘରେ ବସିକି ॥

ଏକୋ ପେନ ସେଟ୍ ଆଉ କାଗଜ କାଢ଼ିଲା।
ଚୁପ୍‌ଚାପ୍ ଏକୁଟିଆ ଚର୍ ଚର୍ ଆଙ୍କିଲା।
ହମ୍ପଟୀ-ଡମ୍ପଟୀ, ଖେଳଣା-କୁଣ୍ଢେଇ, ବାଘମାନଙ୍କୁ ତିଆରିଲା
ହଟଚମଟ ବିଦ୍ୟା ଭଳି ନାନା ଚିତ୍ର ରଙ୍ଗେଇଲା ॥

ଏକୋ ଅଛି ଉପଯୋଗୀ, ସାଗୁଆ, ନେଳିଆ
ବାଦାମୀ, ହଳଦି ସୁଣ୍ଡି ପାଟଳ, ନାଲିଆ।
ଭାଓଲେଟ୍, ବାଇଗଣି ଆଉ ନାରଙ୍ଗି, କାଳିଆ
ତମ ଲାଗି ପ୍ରତି ସେଟ୍ ଯେ ଦଶ ରଙ୍ଗିଆ ॥





**ଏକୋ**

ସ୍କେଚ୍ ପେନ

**ରଙ୍ଗ ରାଇଜରେ ତମେ ହୁଅ ରଜା - ରଙ୍ଗେଇ, ଚିତ୍ରେଇ ମିଳେ କେତେ ମଜା !**






# ଚନ୍ଦ୍ରମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

---

ମଣିଷକୁ ଥରେ ଥରେ ଦୁର୍ଲଭ ସୁଯୋଗ ମିଳିଥାଏ; ମହତ୍ ପଥରେ ବ୍ରତୀ ହେବା ନିମନ୍ତେ ଦିଗ୍‌ଦର୍ଶନ ମିଳିଥାଏ। କିନ୍ତୁ ମଣିଷ ସେସବୁ ଜ୍ଞାନର ମର୍ମ ପାଶୋରି ଦେଇ ସେ ଖାଲି ତା'ର ଉପର ଆବରଣକୁ ଆଦୋରି ସନ୍ତୁଷ୍ଟ ରହେ। "କନକ ଉପତ୍ୟକାର କାହାଣୀ" ର ଏ ଅଧ୍ୟାୟ ତାହାହିଁ ଦେଖାଉଛି! କେଡ଼େ ମହତ୍ ସୁଯୋଗ ସନ୍ନ୍ୟାସୀ ଦେଇଥିଲେ, ଲୋକେ ତାକୁ ନେଇ କଲେ କ'ଣ!

### ଅମରବାଣୀ

ଭବଂତ୍ୟପି ନିଷ୍ଫଲୈବ, ଧନଦ୍‌ଭର୍ବତ କୃପଣ ପୁରୁଷସ୍ୟ,
ଗ୍ରୀଷ୍ମାତପ ସନ୍ତପ୍ତସ୍ୟ, ନିଜଚ୍ଛାୟେବ ପଥିକସ୍ୟ।

[ଦାରୁଣ ଖରାରେ ଚାଲିଥିବା ପଥିକକୁ ତା' ନିଜର ଛାଇ କୌଣସି ସହାୟତା କରେ ନାହିଁ। ସେହିପରି ଧନ ଖାଲି ସଞ୍ଚି ରଖୁଥିବା କୃପଣ ବି ନିଜ ଧନରୁ କିଛି ଲଭ ପାଏ ନାହିଁ।]

---

ବର୍ଷ : ୨୧ ଜୁନ୍ ୧୯୮୮ ଅଙ୍କ : ୧୨

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

चंदा मामा बूझ के हारे -
छोटे छोटे, प्यारे प्यारे,
रंगबिरंगे कैसे तारे?
तारे नहीं, ये जेम्स हैं सारे.



Cadbury's **GEMS**

Cadbury's GEMS

जो चाहे खेले, जो चाहे खाले.

# ଜହ୍ନମାମୁଁ ସମ୍ବାଦ-ବିଚିତ୍ରା

### ଶାନ୍ତ କପୋତ

ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଆମେରିକା ଓ ରୁଷିଆର ଶାସକମାନଙ୍କ ପାଖକୁ ଏହା ଭିତରେ ଦୁଇଲକ୍ଷ ପଚିଶ ହଜାର ଚିଠି ପଠାଇଛନ୍ତି "ଶାନ୍ତ କପୋତ" ନାମକ ଆନ୍ଦୋଳନର କର୍ମୀମାନେ । ଆଣବିକ ଅସ୍ତ୍ର ନିର୍ମାଣ ବନ୍ଦ ହେଉ, ଆମେ ଶାନ୍ତି ଚାହୁଁ, ଏହାହିଁ ଏସବୁ ଚିଠିର ମର୍ମ ।





### ମିଠା ଇମାରତ୍

ପ୍ୟାରିସ୍‌ର ବିଖ୍ୟାତ ଇଫେଲ୍ ଟାୱାର ଢାଞ୍ଚାରେ ଇଭ ରିକାର୍ଟ ନାମକ ଜଣେ କୁଆଲ ଲମ୍ପୁର ଅଧିବାସୀ ଗୋଟିଏ ୨.୪୩ ମିଟର ଉଚ୍ଚ ଇମାରତ୍ ବନାଇଛନ୍ତି । ଏହା ୪୮ କେ.ଜି. ଚିନିରେ ନିର୍ମିତ ।

### ଶୁକ୍ର ଗ୍ରହ ଅଭିଯାନ

ଶୁକ୍ର ଗ୍ରହକୁ ଏକ ଅନ୍ତରୀକ୍ଷ ଯାନରେ ମଣିଷ ପ୍ରେରଣ କରିବା କୌଣସି ଗୋଟିଏ ରାଷ୍ଟ୍ରର ବୈଜ୍ଞାନିକମାନଙ୍କ ପାଇଁ କାଠିକର ହୋଇପାରେ । ରୁଷିଆର ସର୍ବୋଚ୍ଚ ନେତା ମିଖାଇଲ୍ ଗୋର୍ବାଚେଭ୍ ତେଣୁ ଆମେରିକା ସହ ମିଶି ସେ ଦିଗରେ କାମ କରିବାର ପ୍ରସ୍ତାବ ଦେଇଛନ୍ତି ।






### ନନ୍ଦନ କାନନରେ ନୂତନ ଅତିଥି

ଭୁବନେଶ୍ୱରର ଅଦୂରରେ ଅବସ୍ଥିତ ନନ୍ଦଦ କାନନରେ ଆସି ପହଞ୍ଚିଛନ୍ତି ଯୋଡ଼ିଏ ସିପାଞ୍ଜି, ଗୋଟିଏ ବାବୁନ ଏବଂ ଯୋଡ଼ିଏ କଙ୍ଗାରୁ । ଏମାନେ ଟେକ୍ସାସ୍‌ରୁ ଆସିଛନ୍ତି । ସେଠାରୁ ଆହୁରି କେତେଗୋଟି ପଶୁ ଆସୁଛନ୍ତି । ବଦଳରେ ନନ୍ଦନ କାନନରୁ ଯୋଡ଼ିଏ ଧଳା ବାଘଛୁଆ ସେଠାକାର ଚିଡ଼ିଆଖାନାକୁ ଯାଉଛନ୍ତି ।

# ଚିତ୍ରକଳା ଓ ବିକ୍ରୟ-ବିଜ୍ଞାନ

ଶ୍ରୀକାନ୍ତ ଜଣେ ଚିତ୍ରଶିଳ୍ପୀ । ସେ ଯେଉଁ ସବୁ ଚିତ୍ର ଅଙ୍କନ କରେ, ସେସବୁ ତା' ବନ୍ଧୁମାନଙ୍କୁ ଉପହାର ଦେଇଦିଏ । ନିଜେ ଶିକ୍ଷକତା କରି ଜୀବିକା ନିର୍ବାହ କରେ ।

ଥରେ ତା'ର କିଛି ଅଧିକା ଟଙ୍କା ପ୍ରୟୋଜନ ହେଲା । ସେ ଗୋଟିଏ ସୁନ୍ଦର ଚିତ୍ର ଅଙ୍କନ କରି ସେ ଅଞ୍ଚଳର ଥିଲାବାଲା ଲୋକଙ୍କୁ ଖବର ଦେଲା କି ସେ ଚିତ୍ରଟି ସେ ବିକିବ । ଲୋକେ ଆସି ଦେଖିଲେ । କିନ୍ତୁ ପାଞ୍ଚ ଦଶଟଙ୍କାରୁ କେହି ଅଧିକା ଦେବାକୁ ରାଜି ହେଲେ ନାହିଁ ।

ଶ୍ରୀକାନ୍ତର ଜଣେ ବନ୍ଧୁ ମୋହନ ବଜାର ଉପରେ ଗୋଟିଏ ଦୋକାନ କରିଥାଏ । ସେ ଆସି ଶ୍ରୀକାନ୍ତଠୁଁ ଚିତ୍ରଟି ନେଇଗଲା । ନିଜ ଦୋକାନରେ ତାକୁ ଟାଙ୍ଗି କୌଣସି ଗରାଖ ଆସିଲେ ପଚାରେ, "ବାବୁ, ଚିତ୍ରଟି କିପରି ହୋଇଛି ?" "ବାଃ, ଚମତ୍କାର !" ଲୋକେ କହନ୍ତି ।

"ଠିକ୍ । ଏହାକୁ କେତେ ଲୋକ କିଣିବାକୁ କହୁଛନ୍ତି । ମୁଁ ଦେଉନାହିଁ ।"

ସେଠାକାର ଜମିଦାର ଏକଥା ଶୁଣିଲେ । ସେ ଆସି ଚିତ୍ରଟିକୁ ଦେଖି ତାରିଫ୍ କଲେ ଓ କିଣିବାକୁ ଚାହିଁଲେ । "ହଜୁର୍ ! କ୍ଷମା କରନ୍ତୁ । ମୁଁ ବିକିବି ନାହିଁ ।" ମୋହନ କହିଲା ।

"ଜରୁର୍ କିଣିବି ।" ଜମିଦାର ତା' ହାତରେ ପାଞ୍ଚଶହ ଟଙ୍କା ଗୁଞ୍ଜି ଚିତ୍ରଟି ନେଇଗଲେ ।

ମୋହନ ଯାଇ ଶ୍ରୀକାନ୍ତକୁ ଟଙ୍କା ଧରାଇ ଦେଲା ଓ ହସି ହସି କହିଲା, "ଆରେ ଭାଇ ଖାଲି ଚିତ୍ର କଳା ଜାଣିଲେ ହେବ ? ବିକ୍ରୟ-ବିଜ୍ଞାନ ଜାଣିବା ଦରକାର ।





# ଦେହ ବଦଳ

ଅନେକ ଦିନ ତଳର କଥା । ଫରାସୀ ଦେଶର ଏକ ମୁଲକରେ ରାଜୁତି କରୁଥିଲେ ଜଣେ ରାଣୀ । ତାଙ୍କର ଥିଲା ବିରାଟ ରାଜ ପ୍ରାସାଦ; ତାକୁ ଘେରି ରହିଥିଲା ମନୋରମ ଉଦ୍ୟାନ । ଉଦ୍ୟାନ ଭିତରେ ଶୀତଳ ଜଳାଶୟ ଓ ଲତାକୁଞ୍ଜମାନ ରହିଥିଲେ । ମଝିରେ ମଝିରେ କେତେ ପ୍ରକାର ଶଙ୍ଖମଲମଲ ମୂର୍ତ୍ତିମାନ ଶୋଭା ପାଉଥିଲେ ।

ରାଣୀ ଇଚ୍ଛା କଲେ ସେ ଜଳାଶୟ ସନ୍ତରଣ କରି, ଉଦ୍ୟାନ ଭିତରେ ସୁଲୁ ସୁଲୁ ବାଆ ସେବନ କରି ବହୁତ ଖୁସିରେ ସମୟ ଅତିବାହିତ କରି ପାରନ୍ତେ । କିନ୍ତୁ ସେ ତାହା କରୁ ନଥିଲେ । କାରଣ, ଦିନେ ସେ ଅସାମାନ୍ୟା ରୂପବତୀ ଥିଲେ । ବର୍ତ୍ତମାନ ସେ ବୟସାଧିକ୍ୟ ଯୋଗୁଁ ସେ ସୌନ୍ଦର୍ଯ୍ୟ ହରାଇ ଥିଲେ । ସେ ଏତେ ସୁନ୍ଦରୀ ଥିଲେ ଯେ ନିଜ ସମକକ୍ଷ ସୁନ୍ଦର ଯୁବକ କୁଆଡ଼େ ନ ପାଇବାରୁ ବିବାହ ହୋଇ ନଥିଲେ । ବର୍ତ୍ତମାନ ସୌନ୍ଦର୍ଯ୍ୟ ହୀନ ଚେହେରା ସେ କାହାକୁ କିପରି ଦେଖାଇବେ ? ତେଣୁ ସେ ନିଜ କକ୍ଷ ଭିତରୁ ପ୍ରାୟ ବାହାରକୁ ଯାଉନଥିଲେ । ମନ୍ତ୍ରୀମାନେ ଆସିଲେ ବି ସେ ଯଥା ସମ୍ଭବ ପର୍ଦ୍ଦା । ଆଢ଼ୁଆଳରେ ରହି ସେମାନଙ୍କୁ ନିଜ ନିର୍ଦ୍ଦେଶ ଦେଉଥିଲେ ।

ଦିନେ ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ଜଣେ ଯୁବତୀ ତାଙ୍କ କକ୍ଷ ଭିତରେ ଆସି ଠିଆ ହୋଇଛି । ସେ ରୁକ୍ଷ ଭାବରେ ପଚାରିଲେ, "ତମେ କିଏ ? ମୋ ଦାସୀମାନଙ୍କ ହାତରେ ଖବର ନଦେଇ କିପରି ହଠାତ୍ ମୋ କକ୍ଷ ଭିତରକୁ ଆସିଗଲ ?"

"ମହାରାଣୀ ! ଏତକ କରିବା ନିମନ୍ତେ ମୋତେ ଅନେକ ଦିନ ଅପେକ୍ଷା କରିବାକୁ

ଗଙ୍ଗାଧର

ହୋଇଛୁ । ସମସ୍ତଙ୍କୁ ଏଡ଼ାଇ ନ ଆସିଲେ ସେମାନେ ମୋତେ ନାନା ପ୍ରଶ୍ନ କରନ୍ତେ । ମୁଁ ଉତ୍ତର ଦେଇ ପାରନ୍ତି ନାହିଁ । ମୁଁ ଯେଉଁ ଗୋପନ କଥା ଆପଣଙ୍କୁ କହିବା ନିମନ୍ତେ ଆସିଛୁ, ତାହା ଆଉ କେହି ଜାଣିବା ଉଚିତ ନୁହେଁ ।" ଯୁବତୀ କହିଲା ।

"ଏପରି ଗୋପନ କଥା କ'ଣ ?" ମହାରାଣୀ ଟିକିଏ ବିରକ୍ତ ତଥା ବିସ୍ମିତ ହୋଇ ପଚାରିଲେ ।

"ମହାରାଣୀ! ମୁଁ ଜଣେ ଗରିବ ଝିଅ । ମୋର ବାପା ମା କେହି ନାହାନ୍ତି । ପ୍ରାସାଦଠୁଁ ଅଳ୍ପ ଦୂରରେ ମୋ ଘର । ଅନେକ ସମୟରେ ମୁଁ ସୁଖାଦ୍ୟ ଖାଇବାକୁ ପାଏଁ ନାହିଁ । ଅତି ସାଧାରଣ ଲୁଗାପଟା ପିନ୍ଧି ମୋତେ ଦିନ କାଟିବାକୁ ପଡ଼େ । ମୁଁ ଆପଣଙ୍କ ପ୍ରାସାଦ ଆଡ଼େ ଲୋଭାତୁର ଭାବରେ ଅନାଇ ମନକୁ ମନ କହେଁ, ହାୟ! ମୁଁ ଯଦି ଏ ପ୍ରାସାଦର ରାଣୀ ହୋଇଥାନ୍ତି, ତେବେ କେତେ ଆନନ୍ଦରେ ରହୁଥାନ୍ତି! ଆଜି ମୁଁ ଏକୁଟିଆ ଏକଥା ବଡ଼ ପାଟିରେ କହିପକାଇଲି । ଜଣେ ଯାଦୁକର ଏକଥା ଶୁଣି ପକାଇଲେ ଓ ମୋତେ ମନ୍ତ୍ରଟିଏ ଶିଖାଇ ଦେଲେ । ମୁଁ ଯଦି ଆପଣଙ୍କ ହାତରେ ହାତ ରଖି ସେ ମନ୍ତ୍ର ପଢ଼ିବି, ତେବେ ମୁଁ ଆପଣଙ୍କ ଦେହ ଭିତରକୁ ଚାଲିଯିବି ଓ ଆପଣ ମୋ ଦେହ ଭିତରକୁ ଚାଲି ଆସିବେ । ଶୁଣିଲି, ଆପଣ କୁଆଡେ଼ ଆଜିକାଲି ନିଜ ଚେହେରା ଖରାପ ହୋଇଯାଇଥିବା ଯୋଗୁଁ ବହୁତ ଦୁଃଖରେ କାଳ କାଟୁଛନ୍ତି । ଯଦି ରାଜ



ହେବେ, ତେବେ ଆମ ନିଜ ନିଜ ଅବସ୍ଥା ବଦଳିଯିବ!" ଯୁବତୀ କହିଲା।

"ଗ୍ରେପ୍! ମୁଁ ତୋ ବୟସରେ କେଡ଼େ ସୁନ୍ଦର ଥିଲି! ତୁ ନିଜକୁ ମନେ ମନେ ଘର ସୁନ୍ଦରୀ ଠଉରାଉଛୁ, ନୁହେଁ? ତୋ ଭଳି ସାଧାରଣ ଚେହେରାବାଲୀ ଝିଅ ହୋଇ ମୁଁ ରହିବି, ଏକଥା ତୁ କଳ୍ପନା କରିପାରୁଛୁ?" ରାଣୀ ରାଗିଯାଇ କହିଲେ।

"ମହାରାଣୀ! ହୁଏତ ମୋ ବୟସରେ ଆପଣ ମୋଠୁଁ ସୁନ୍ଦରୀ ଥିଲେ। କିନ୍ତୁ ଆପଣ ବର୍ତ୍ତମାନ କିପରି ଦିଶୁଛନ୍ତି? ଦର୍ପଣ ଆଣି ଦେଖାଇ ଦେବି?" ଯୁବତୀ କହିଲା।

"ତୋର ଏଡ଼େ ସାହସ ମୁଁ ଅସୁନ୍ଦରୀ ବୋଲି କହୁଛୁ?. ତୋତେ ବର୍ତ୍ତମାନ ପ୍ରାଣଦଣ୍ଡ ଦେବି!" ଏହା କହି ରାଣୀ ଉଠି ପଡିଲେ। ଡରିଯାଇ ଯୁବତୀ କକ୍ଷ ଭିତରୁ ବାହାରିଯାଇ ପାହାଚ ଝପି ତଳକୁ ତଳକୁ ଗଲା। ରାଣୀ ବାରନ୍ଦାକୁ ବାହାରି ଆସି ଦେଖିଲେ, ଯୁବତୀ ପ୍ରାସାଦ ଭିତରୁ ବାହାରି ଯାଇ ଦୌଡ଼ି ଦୌଡ଼ି ପଳଉଛି। ରାଣୀ ସେତେବେଳକୁ ସିଧା ଠିଆ ହୋଇ ପାରୁ ନଥାନ୍ତି। ସେ ଯୁବତୀ କ୍ଷିପ୍ର ଗତିରେ ଦୌଡୁଥିବାର ଦେଖି ହଠାତ୍ ତାଙ୍କର ମନ ବଦଳିଗଲା। ସେ ଯଦି ପୁଣି ଯୌବନ ଓ ବଳ ଫେରି ପାଆନ୍ତେ, ତେବେ ସେହିପରି ମୁକ୍ତ ପବନରେ ଦୌଡ଼ାଦୌଡ଼ି କରନ୍ତେ।

ସେ ଅନେକ ସମୟ ପର୍ଯ୍ୟନ୍ତ ଉପର ମହଲର ବାରନ୍ଦାରୁ ସେମିତି ଅନାଇ ରହିଲେ। କିନ୍ତୁ ସେଦିନ ଆଉ ଯୁବତୀର ଦେଖା ମିଳିଲା ନାହିଁ





ତହିଁ ପରଦିନ ଖରାବେଳେ ଦାସଦାସୀମାନେ ବିଶ୍ରାମ କରୁଥିବା ବେଳେ ରାଣୀ ପୁଣି ଯାଇ ବାରଣ୍ଡାରେ ଠିଆ ହେଲେ । ହଠାତ୍ ସେ ଯୁବତୀ ତାଙ୍କ ଦୃଷ୍ଟିଗୋଚର ହେଲା । ଯୁବତୀଟି ଗୋଟିଏ ଗଛ ମୂଳରେ ଠିଆ ହୋଇ ତାଙ୍କ ଆଡ଼େ ଅନାଇଥାଏ ।

ରାଣୀ ମୁହଁରେ ହସ ଫୁଟାଇ, ହାତଠାରି ତାକୁ ଡାକିଲେ । ଯୁବତୀ ସଙ୍ଗେ ସଙ୍ଗେ ପ୍ରାସାଦ ଭିତରକୁ ଆସି ତା'ପରେ ଉପର ମହଲାରେ ପହଞ୍ଚିଗଲା । ରାଣୀ କହିଲେ, "ତୁମ ପ୍ରସ୍ତାବରେ ମୁଁ ରାଜି!" ଯୁବତୀ ମୁହଁରେ ଆନନ୍ଦ ଉଚ୍ଛୁଳି ଉଠିଲା । ରାଣୀଙ୍କ ହାତରେ ହାତ ରଖି ସେ ମନ୍ତ୍ର ପଢ଼ିଲା । ସଙ୍ଗେ ସଙ୍ଗେ ତା' ଦେହ ଭିତରକୁ ରାଣୀ ଚାଲିଗଲେ; ରାଣୀଙ୍କ ଦେହ ଭିତରକୁ ସେ ଚାଲି ଆସିଲା ।

ଯୁବତୀ-ବେଶୀ ରାଣୀ ପଡ଼ିଆ ଭିତରକୁ ଚାଲିଗଲେ । ଯୁବତୀ ଯେଉଁ କୁଡ଼ିଆରେ ରହେ, ସେ କୁଡ଼ିଆର ଠିକଣା ସେ ଜାଣିଥିଲେ । ସେଠାରେ ପହଞ୍ଚି ତାଙ୍କ ମନ ଉଦାସ ହୋଇଗଲା । ହଠାତ୍ ଯୌବନ ଫେରି ପାଇ ତାଙ୍କ କ୍ଷୁଧା ପ୍ରବଳ ହୋଇଥିଲା । ଦେଖିବା ବେଳକୁ କୁଡ଼ିଆ ଭିତରେ ଦୁଇଖଣ୍ଡ ଶୁଖିଲା ରୋଟି ଅଛି । ସେ ତାକୁ ଚୋବାଇଲେ, କିନ୍ତୁ ଥରେ ଗିଳି ଦ୍ୱିତୀୟଥର ଗିଳି ପାରିଲେ ନାହିଁ । ଭାବିଲେ ପାଖରେ କୌଣସି ଦୋକାନକୁ ଯାଇ କିଛି ଭଲ ଖାଦ୍ୟ କିଣିବେ । ଦୋକାନରେ ଯାଇ ପହଞ୍ଚି ମାଖନ ପିଠା ଦିଅ ବୋଲି କହିବା ମାତ୍ରେ ଦୋକାନୀ ରାଗି ଯାଇ କହିଲା, "ଥଟ୍ଟା କରିବୁ ମୋ ସାଙ୍ଗରେ, ହଇରେ ଝିଅ! ଜୀବନରେ କେବେ ମାଖନ ପିଠା ଦେଖିଛୁ? ଖାଇବା ତ ଦୂରର କଥା । ଯା, ସେ ନଅର ପଛପଟେ ବୁଲିବୁ । ତାହାହେଲେ ଅନ୍ତତଃ ମାଖନ ପିଠାର ବାସ୍ନା ପାଇବୁ ।"

"ଚୁପ୍ କର! ସାଧାରଣ ଗୋଟାଏ ଦୋକାନୀର କି ଗର୍ବ ଏଭଳି ଭାଷାରେ ମୋ ସହ କଥାବାର୍ତ୍ତା କରିବାର ସାହସ ତମର ଆସିଲା କେଉଁଠୁ? ଏହାର ଫଳ କ'ଣ ଜାଣିଛ?

ମୁଁ ତମର ପ୍ରାଣଦଣ୍ଡ ବିଧାନ କରିବି!" ଯୁବତୀ-ରୂପୀ ରାଣୀ କଡ଼ା ସ୍ୱରରେ କହିଲେ ।

ଦ୍ୱାରପାଳ ଓ ପାଖରେ ଥିବା ଲୋକେ ଆଶ୍ଚର୍ଯ୍ୟ ହୋଇ ଅନାଇଲେ । ଜଣେ କହିଲା, "ଆରେ, ଆରେ, ଏ ବାପା ମା ଛେଉଣ୍ଡ ଝିଅ ଉପରେ କୌଣସି ପ୍ରେତ ସବାର୍ ହୋଇଛି । ଆମେ ଏହାକୁ ଧରି ବାନ୍ଧି ପକାଇ ରଖିବା ଓ ଗୁଣିଆ ଡାକି ପ୍ରେତ ଛଡ଼ାଇବା । ଏହାର ବାପା ମା ନାହିଁ ବୋଲି କ'ଣ ଆମମାନଙ୍କର ଏହା ପ୍ରତି କର୍ତ୍ତବ୍ୟ ନାହିଁ ?"

ଅନ୍ୟମାନେ ଏକଥା ସହ ଏକମତ ହେଲେ ଓ ଯୁବତୀକୁ ଧରିବାକୁ ଅଗ୍ରସର ହେଲେ । ଯୁବତୀ-ରୂପୀ ରାଣୀ ଏସବୁ କାଣ୍ଡ ଦେଖି ଭୟରେ କାତର ହୋଇ ଦୌଡ଼ି ପଳାଇଲେ । ଦୌଡ଼ି ଦୌଡ଼ି ସିଧା ଯାଇ ସେ ପ୍ରାସାଦର ଉପର ମହଲରେ ହାଜର ହେଲେ ।

ସେ ଦେଖିଲେ ରାଣୀ-ରୂପୀ ଯୁବତୀ କାନ୍ଦୁଛି । ତାଙ୍କୁ ଦେଖି ସେ ଆନନ୍ଦରେ କହିଲା, "ମହାରାଣୀ, ମୋତେ କ୍ଷମା କରନ୍ତୁ । ମୁଁ ତ କିଛି ଖାଇ ପାରୁନାହିଁ, କାହା ସହ କଥା କହି ପାରୁନାହିଁ, ଏ ଅବସ୍ଥାରେ ଏ ରାଜ୍ୟ, ଏ ଐଶ୍ୱର୍ଯ୍ୟ ଥାଇ ମୋର ଲାଭ କ'ଣ ? ମୋ ଦେହର ଅବସ୍ଥା କଥା ଭୁଲିଯାଇ ମୁଁ ଦୁଇଥର ଦୌଡ଼ିବାକୁ ବାହାରି କଚଡ଼ା ଖାଇଲିଣି ।" ଏହା କହି ସେ ଯୁବତୀ-ରୂପୀ ରାଣୀର ହାତ ଧରି ପକାଇ ମନ୍ତ୍ର ପଢ଼ିଦେଲା । ଗୃହୁଁ ଗୃହୁଁ ଯୁବତୀ ତା' ପୂର୍ବ ଦେହକୁ ଓ ରାଣୀ ତାଙ୍କ ପୂର୍ବ ଦେହକୁ ଫେରିଗଲେ ।

"ମୁଁ ଗୃଲିଲି!" କହି ଯୁବତୀ ବିଜୁଳି ବେଗରେ ଦୌଡ଼ି ପଳାଇଲା । ରାଣୀ ଅନ୍ୟ ପରିଗୃରିକାଙ୍କ ହାତରେ ତାକୁ ଡକାଇ ପଠାଇଲେ ଓ ନିଜର ପରିଗୃରିକା ରୂପେ ନିଯୁକ୍ତ ଦେଲେ । ଯୁବତୀଟିର ଖାଇବା ପିଇବାର ଆଉ ଅସୁବିଧା ହେଲ ନାହିଁ । ସେ ରାଣୀଙ୍କ ସୁଖଦୁଃଖ ବୁଝୁଥାଏ । ରାଣୀ ତା'ର ସୁଖଦୁଃଖ ବୁଝୁଥାନ୍ତି ।





# ତିନି କନ୍ୟା

ଅମରାବତୀରେ ରହୁଥିଲେ ଜଣେ ବଣିକ । ସେ ଟିକିଏ ଅଧିକ ବୟସରେ ବାପ ହୋଇଥିଲେ । ତିନୋଟି କନ୍ୟା ଜନ୍ମ ଦେଇ ତାଙ୍କ ପତ୍ନୀ ପରଲୋକଗମନ କରିଥିଲେ ।

ଦିନେ ବଣିକ ଭାବିଲେ : "ମୁଁ ଆସି ବୃଦ୍ଧ ହେଲିଣି । ତିନିଜଣଯାକ ଝିଅ ବିବାହ-ଯୋଗ୍ୟ ହୋଇ ରହିଛନ୍ତି । ହଠାତ୍ କେବେ ମୋ ଶେଷ ମୁହୂର୍ତ୍ତ ଆସି ପହଞ୍ଚିଯିବ, ସେକଥା କିଏ କହିବ ? ଏକା ସମୟରେ ତିନିଜଣଙ୍କ ବିବାହ ଶେଷ କରିବି । ମୋ ସମ୍ପତ୍ତି ତିନି ଭାଗ କରିଦେବି । ଆଉ ବ୍ୟବସାୟ କରିବା ଦରକାର ନାହିଁ । ଶେଷ ଜୀବନ କିଛିଦିନ ତୀର୍ଥରେ ଓ ବାକିତକ ଧ୍ୟାନ ପ୍ରାର୍ଥନାରେ କଟାଇବି ।"

ସେ ତିନି କନ୍ୟାଙ୍କୁ ଡାକିଲେ ଓ ନିଜ ଚିନ୍ତା ସେମାନଙ୍କ ଆଗରେ ପ୍ରକାଶ କରି କହିଲେ, "ତୁମମାନଙ୍କ ବିବାହ ସମ୍ପନ୍ନ ହେବା ପରେ ମୁଁ ଯାଇ କିଛିଦିନ କାଶୀରେ ରହିବି । ତା'ପରେ ଅମରାବତୀ ଲେଉଟି ଆସି ପ୍ରତି ଝିଅ ପାଖରେ କିଛି କିଛିଦିନ ରହୁଥିବି ପୁଣି ତୀର୍ଥ ଯାଉଥିବି । ଏହିପରି ଶେଷ ଜୀବନ ବିତାଇବି ବୋଲି ଭାବୁଛି । କ'ଣ କହୁଛ ?" ଏ ପ୍ରଶ୍ନ କରି ସେ ବଡ଼ ଝିଅ ଆଡ଼େ ଅନାଇଲେ ।

ବଡ଼ ଝିଅ କହିଲା, "ବାପା ! ଆପଣଙ୍କ ବିବେଚନା ଠିକ୍ । ତେବେ ଝିଅ ପାଖରେ ରହିବା କଥା ଯେ କହିଲେ, ତାହା ନିର୍ଭର କରେ ଝିଅ ଶାଶୁଘର ଲୋକମାନେ କପରି ତାହାରି ଉପରେ । ଆପଣଙ୍କ ଭଳି ଅଭିଜ୍ଞ ବ୍ୟକ୍ତିଙ୍କୁ ମୁଁ ବା ଏ ବିଷୟରେ କହିବି କ'ଣ ?"

"ଠିକ୍ କଥା କହିଛୁ । ମୁଁ ଅବସ୍ଥାକୁ ଖାଲି ମୋ ଦିଗରୁ ବିଚାର କରି ସେଭଳି ଯୋଜନା

ତପନ କୁମାର

କରୁଥିଲି । ଅନ୍ୟ ଦିଗରୁ ଦେଖି ନଥିଲି ।" ବଣିକ କହିଲେ ।

ମଝିଆ ଝିଅ କହିଲା, "ବାପା ! ଅନ୍ତତଃ ମୋ ପାଇଁ ଆପଣ ଏହି ସହର ଭିତରେ ଘରଟିଏ ଖୋଜି ବାହାର କରନ୍ତୁ । ତା'ହେଲେ ଆପଣ ମୋ ପାଖରେ ଆସି ରହିବେ । ଯଦି ଶାଶୁଘର ଲୋକଙ୍କ ଯୋଗୁ ରହିବା ସମ୍ଭବପର ନ ହୁଏ ତେବେ ମୁଁ ଆସି ଅନ୍ତତଃ ଆପଣଙ୍କର ଦେଖାଶୁଣା କରୁଥିବି ।"

"ଖୁବ୍ ବାସ୍ତବ ପ୍ରସ୍ତାବ ।" ବଣିକ କହିଲେ ଓ ସାନ ଝିଅ ଆଡ଼େ ଅନାଇଲେ । ସାନ ଝିଅ ଜାଢ ପକାଇ ବାପା ପାଖକୁ ଆସି କହିଲା, "ମୋ ବାହାଘର ବିଷୟରେ ଚିନ୍ତା କରିବା ଜରୁରୀ କି'ଣ ? ଆପଣ କାଶୀରେ ଯେଉଁ ସମୟତକ ରହିବେ, ଆପଣଙ୍କ ସେବା କରିବ କିଏ ? ମୁଁ ସାଥିରେ ଯିବି ଆପଣଙ୍କ ସେବା କରିବି ଓ ତୀର୍ଥ ଯାଇ ପୁଣ୍ୟଲାଭ କରିବି । ମୋ ବାହାଘର ଚିନ୍ତା ମନରୁ ଦୂର କରି ଦିଅନ୍ତୁ ।"

ବଣିକ ନୀରବରେ ଝିଅ ଆଖିରୁ ଲୁହ ପୋଛିଦେଲେ । ସେ କିଛି କହିଲେ ନାହିଁ ସତ, କିନ୍ତୁ ସାନ ଝିଅର ପ୍ରସ୍ତାବ ଅନୁସାରେହିଁ କାମ କଲେ । ସେ ଦୁଇ ବଡ଼ ଝିଅଙ୍କ ବାହାଘର କରିସାରି ସାନ ଝିଅକୁ ନେଇ କାଶୀ ଗଲେ । କାଶୀରେ ଛଅମାସ ଅତିବାହିତ କରି ଅମରାବତୀ ଫେରି ଆସିଲେ । କାଶୀରେ ସାନ ଝିଅର ସେବାରେ ସେ ବଡ଼ ମୁଗ୍ଧ ହୋଇଥିଲେ । ଯୋଗକୁ ସେ ଏପରି ଗୋଟିଏ ଯୁବକକୁ ସାନ ଝିଅର ବର ରୂପେ ପାଇଲେ, ଯିଏ ବାପା ମା' ହରାଇଥିଲା ତେଣୁ ବିବାହ ପରେ ସେ ଆସି ବଣିକଙ୍କ ଘରେହିଁ ରହିଲା ଓ ଘରର ଓ ବେପାରର ସମସ୍ତ ଦାୟିତ୍ୱ ସମ୍ଭାଳିଲା । ବଣିକ ନିଜ ସମ୍ପତ୍ତିର ଅଧା ଦୁଇ ବଡ଼ ଝିଅଙ୍କ ଭିତରେ ବାଣ୍ଟି ଦେଲେ । ବାକି ଅଧା ସାନ ଝିଅକୁ ଦେଲେ । ତାଙ୍କ ମୃତ୍ୟୁଯାଏ ସାନ ଝିଅ ମାଆ ଭଳି ତାଙ୍କର ଯତ୍ନ ନେଉଥାଏ ।






[ ୭ ]

[ଜ୍ଞାନ-ବିଜ୍ଞାନ ରାଜ୍ୟର ଲୋକେ ଜୀବନରେ ହସ କ'ଣ ଜାଣି ନଥିଲେ । ସେମାନେ ଯେପରି ହସି-ପାରିବେ, ରାଜାଙ୍କୁ ସେହି ବର ଆଣିଦେବାର ପ୍ରତିଶ୍ରୁତି ଦେଇ ରାଜୁ ତାଙ୍କଠାରୁ ନିଜ କଳେବରକୁ ଶକ୍ତି-ତରଙ୍ଗରେ ପରିଣତ କରି ପୁନର୍ବାର ଦେହ ଧାରଣ କରିବାର ବିଦ୍ୟା ଶିଖିନେଲା । ସେହି ବିଦ୍ୟା ପ୍ରୟୋଗ କରି ସେ ଅଦୃଶ୍ୟ ହେଲା ।  ତା'ପରେ...]

ଯେତେବେଳେ ରାଜୁ ପ୍ରବଳ ଇଚ୍ଛାଶକ୍ତି ପ୍ରୟୋଗ କରି ଅଦୃଶ୍ୟ ଶକ୍ତି ତରଙ୍ଗକୁ ପୁଣି ନିଜ କଳେବରରେ ପରିଣତ କଲା, ସେତେବେଳେ ସେ ନିଜେ ଗୋଟିଏ ଅନ୍ଧକାର ଗୁମ୍ଫା ଭିତରେ ପଡ଼ିଥିବାର ଦେଖିଲା ।

ସେ ଏଣେତେଣେ ଅନାଇଲା । ତା'ର ଦୃଷ୍ଟି ଆକର୍ଷଣ କଲା ଯୋଡ଼ିଏ ନୀଳାଭ ଆଲୋକ ବିନ୍ଦୁ । ଅଚିରେ ସେ ବୁଝିଲା, ସେ ଯୋଡ଼ିକ ଜଣେ ଯୋଗୀଙ୍କ ନୟନ ଯୁଗଳ । ଯୋଗୀ ଏକ-ଧ୍ୟାନରେ ତାକୁ ଲକ୍ଷ୍ୟ କରୁଥିଲେ ।

ହେ ଭଗବାନ୍! ସେ ଏ ନୂତନ ରାଜ୍ୟରେ ପୁଣି ଗୋଟାଏ ଦୁଷ୍ଟ ପୁରୋହିତର ହାବୁଡ଼ରେ ପଡ଼ିନାହିଁ ତ ? ସେ ଆତଙ୍କ ଅନୁଭବ କଲା ।

"କିଏ ତୁମେ ? କେଇ ଶତାବ୍ଦୀ ଧରି ଅବରୁଦ୍ଧ ମୋର ଏ ଗୁମ୍ଫା ଭିତରେ ତମେ ସିଧା ସିଧା ଆବିର୍ଭୂତ ହେଲ କିପରି ?"

ମନୋଜ ଦାସ



ଯୋଗୀ ବାସ୍ତବିକ ଆଶ୍ଚର୍ଯ୍ୟ ହୋଇ ଏ ପ୍ରଶ୍ନ କଲେ ।

ଗୁଂଫାର ଏକ କୋଣରେ ପୁଞ୍ଜିଭୂତ କେତେ ଖଣ୍ଡି ଅପୂର୍ବ ଶିଳା ଖଣ୍ଡରୁ ବାହାରୁଥିବା ସ୍ନିଗ୍ଧ ରଶ୍ମିରେ ସେ ବାତାବରଣ ସାମାନ୍ୟ ଆଲୋକିତ ହେଉଥାଏ ।

ରାଜୁ ଉଠି ବସିଲା । "ମହାଶୟ, କ'ଣ କହିଲେ ? ଏ ଗୁଂଫାର ଦ୍ୱାର କେଇ ଶତାବ୍ଦୀ ଧରି ଅବରୁଦ୍ଧ ରହିଥିଲା ? ମାନେ, ଆପଣ ଏ ଦୀର୍ଘକାଳ ବ୍ୟାପି ବାହାରକୁ ଯାଇ ନାହାନ୍ତି ?"

"ଠିକ୍ । କିନ୍ତୁ ମୋ ପ୍ରଶ୍ନର ଉତ୍ତର ?"

ରାଜୁ ସଂକ୍ଷେପରେ ଆପଣାର କାହାଣୀ ଗପିଗଲା । ଯୋଗୀ ଆଖି ବୁଜି କିଛିକ୍ଷଣ ଅଭିବାଦନ କରି ତା'ପରେ ରାଜୁ ମୁଣ୍ଡରେ ହାତ ରଖିଲେ । ସେ ସ୍ପର୍ଶରେ ରାଜୁ ପୁଲକିତ ହେଲା ।

"ତୁମର ଚେତନା ପବିତ୍ର । ଚେଷ୍ଟା କରି ତୁମେ ଯେଉଁ ଶବ୍ଦତରଙ୍ଗରେ ପରିଣତ ହୋଇଥିଲ, ସେ ତରଙ୍ଗ ବଳେ ବଳେ ମୋ ସାନ୍ନିଧ୍ୟକୁ ଆକୃଷ୍ଟ ହୋଇ ଆସିଗଲ । ତୁମେ ଏଠି ପୁଣି ରୂପ ଗ୍ରହଣ କଲ ।"

ତାଙ୍କ ସ୍ପର୍ଶ ଓ ସାନ୍ନିଧ୍ୟରେ ରାଜୁର ସମସ୍ତ କ୍ଲାନ୍ତି ହେଲା ଦୂରୀଭୂତ । ତା' ଅନ୍ତରରେ ସଞ୍ଚାରିତ ହେଲା ଶାନ୍ତି ଓ ଆନନ୍ଦ । ସେ ବୁଝିଲା, ସେ ଜଣେ ମହାନ୍ ପୁରୁଷଙ୍କ ସଂସ୍ପର୍ଶରେ ଆସିଛି ।

"ଗୁଂଫା ବାହାରକୁ ଯିବା ଚାଲ । ତୁମେ ଦେଖିବ ଏକ ନୂତନ ମୁଲକ । ମୁଁ ମୋ ପୁରୁଣା ପରିବେଶକୁ ଦେଖିବି ବହୁକାଳ ପରେ !" ଯୋଗୀ କହିଲେ ।

ଦୁହେଁ ଯାଇ ଗୁଂଫାର ବନ୍ଦ ଦ୍ୱାର ପାଖରେ ଠିଆ ହେଲେ । ରାଜୁ ପ୍ରକାଣ୍ଡ ପ୍ରସ୍ତର ଖଣ୍ଡିକ ଘୁଞ୍ଚାଇବାକୁ ଚେଷ୍ଟା କରି ବିଫଳ ହେଲା । "ଚିନ୍ତା ନାହିଁ ।" କହିଲେ ଯୋଗୀ । ସେ ଦୁର୍ବଳ ପ୍ରଦୀପଟିଏ ଲିଭାଇବା ପାଇଁ ଯେତିକି ଦରକାର, ସେତିକି ଯୋରେ ଫୁଙ୍କିଦେଲେ । ଶିଳାଖଣ୍ଡ ଅପସରିଗଲା ।

ସେମାନେ ଦିବାଲୋକକୁ ବାହାରି ଆସିଲେ । ସେମାନଙ୍କ ଆଗରେ, ସେମାନେ ଯେଉଁ ପାହାଡ଼ ଉପରେ ଠିଆ ହୋଇଥିଲେ ତା' ପାଦଦେଶରେ ଦେଖା ଯାଉଥିଲା ଏକ ପ୍ରସାରିତ ସୁନ୍ଦର ସହର ।



"ଇଏ କ'ଣ? କାହିଁଗଲା ଏଠାକାର ସୁନ୍ଦର ଅରଣ୍ୟ? କାହିଁଗଲେ ସେସବୁ ତୁଙ୍ଗ ବୃକ୍ଷରାଜି ଓ ସେମାନଙ୍କ ଆଶ୍ରିତ ପଶୁପକ୍ଷୀ?" ଯୋଗୀ ଉତ୍କଣ୍ଠିତ ତଥା ବିମର୍ଷ ଭାବରେ ପ୍ରଶ୍ନ କଲେ ।

ରାଜୁ ତାଙ୍କ ବିସ୍ମୟର ହେତୁ ବୁଝି ପାରୁନାହିଁ ଜାଣି ସେ ତାହା ବୁଝାଇ ଦେଲେ :

ଦିନ ଥିଲା, ଯେତେବେଳେ ତାଙ୍କ ଛଡ଼ା ଏ ମୁଲକରେ ଆଉ ମଣିଷ କେହି ନଥିଲେ । ଥରେ ଦୂରାନ୍ତରର ଜଣେ ଅଦ୍ଧ୍ୟାନ୍ୱେଷୀ ରାଜା ଦ୍ୱାରା ନିପିଡ଼ିତ ଗରିବ ଲୋକଟିଏ ଆସି ଏଠି ପହଞ୍ଚିଥାଏ । କ୍ଷୁଧା ତୃଷ୍ଣାରେ ତା' ପେଟ ଜଳୁଥିବା ବେଳେ ପାହାଡ଼ ଉପରେ କେତୋଟି ପକ୍ଷୀ ଗୋଟିଏ ତରଭୁଜ ଭକ୍ଷଣ କରୁଥିବାର ଦେଖି ସେ ଝପଟି ଆସି ତାହା ଖାଇ ପକାଇଲା । ଅପୂର୍ବ ସୁସ୍ୱାଦୁ ସେ ଫଳ ଖାଇସାରି ତା' ମନରେ ପ୍ରଶ୍ନ ଆସିଲା, ଠିକ ଠିକ ପକ୍ଷୀମାନେ ଏ ବିରାଟ ଫଳ ପାହାଡ଼ ଉପରକୁ ଆଣିଲେ କିପରି? ସେ ଲକ୍ଷ୍ୟ କରି ଦେଖିଲା, ପାହାଡ଼ ଉପରେହିଁ ତାହା ଉପୁଜିଥିଲା ।

"ପାହାଡ଼ ଉପରେ ତରଭୁଜ! କି ଯାଦୁରେ ବାବା!" ସେ ନିଜକୁ ନିଜେ କହିଲା ।

"ଯାଦୁ ନୁହେଁ, ଯୋଗ । ମୋ ବିଭୂତିରୁ ସାମାନ୍ୟ ଦେଇ ମୁଁ ଏହା ଉପୁଯାଇଥାଏଁ—ଏ ବିହଙ୍ଗମାନଙ୍କ ସକାଶେ ।" ଯୋଗୀ ତାକୁ ଜଣାଇ ଦେଲେ ।

ଲୋକଟି ଚମକି ପଡ଼ିଲା । ତା'ପରେ ଯୋଗୀଙ୍କୁ ପ୍ରଣାମ କରି କହିଲା, "ମହାଭାଗ! କୃପା କରି ମୋତେ ଗୋଟିଏ ବିହଙ୍ଗରେ ପରିଣତ କରନ୍ତୁ । ତା'ହେଲେ ଏ ଫଳ ଖାଇ ବଞ୍ଚିଥିବି ।"

ଯୋଗୀ ହସିଲେ । "ବରଂ ମୁଁ ତରଭୁଜର ଆକାର ବଡ଼ କରିଦେବି । ତା' ହେଲେ ପକ୍ଷୀମାନଙ୍କ ସହ ତୁ ବି ଖାଉଥିବୁ ।"

ଲୋକଟି କୃତଜ୍ଞତାରେ ଶିର ଅବନତ କଲା । କିନ୍ତୁ ସେ ମୁଣ୍ଡ ତୋଳିବା ବେଳକୁ ଦିଶୁଥିଲା ଚିନ୍ତିତ ।

"ପୁଣି ଚିନ୍ତାର ହେତୁ?" ଯୋଗୀ ପ୍ରଶ୍ନ କଲେ ।

"ଆପଣଙ୍କୁ କି ଭାଷାରେ ଧନ୍ୟବାଦ ଦେବି, ତାହାହିଁ ମୋ ଚିନ୍ତାର ପ୍ରଥମ ହେତୁ । ଦ୍ୱିତୀୟ



ହେଉ ହେଲ, ମୁଁ ସିନା ତରଭୁଜ ଖାଇ ଆରାମରେ ରହିବି, ପଛରେ ଛାଡ଼ି ଆସିଥିବା ମୋ ପରିବାର କ'ଣ ଖାଇବେ ?"

"ସେମାନଙ୍କୁ ଏଠାକୁ ନେଇ ଆ । ସେମାନେ ବି ତରଭୁଜ ଖାଇ ଚଳିବେ । ଆକାର ଆହୁରି ବଡ଼ କରିଦେବା !" ଯୋଗୀ କହିଲେ ।

ଲୋକଟି ପୁଣି ଶିର ଅବନତ କଲା । କିନ୍ତୁ ମୁଣ୍ଡ ଟେକିବା ବେଳକୁ ମୁହଁରେ ସ୍ପଷ୍ଟ ଆହୁରି ଚିନ୍ତାର ଲକ୍ଷଣ ।

"କ'ଣ ହେଲା ?" ପଚାରିଲେ ଯୋଗୀ ।

"ସେଇ ଏକା ସମସ୍ୟା । ଆପଣଙ୍କୁ କି ଭାଷାରେ ଧନ୍ୟବାଦ ଦେବି । ହିଁ ଏସବୁ କଥା ହେଲା, ପରିବାର ସିନା ଏଠି ଆସି ଆରାମରେ ରହିବେ, କିନ୍ତୁ ମୋର ବନ୍ଧୁ ବାନ୍ଧବ, ଶଳା ସମୁଦ୍ଧି—ସେମାନେ..."

"ଠିକ୍ ଅଛି । ସେମାନଙ୍କୁ ବି ନେଇ ଆ ।"

"ହେ ମହାଭାଗ ! ଶଳା ସମୁଦ୍ଧିଙ୍କ ଶଳା ସମୁଦ୍ଧି... କାଳକ୍ରମେ ପେଟଗୁଡ଼ିକର ସଂଖ୍ୟା ତ ବଢ଼ୁଥିବ !"

ଯୋଗୀ କିଛି ସମୟ ଚୁପ୍ ରହି କହିଲେ, "ଦେଖ । ମୁଁ ଆଜିଠାରୁ ମୋ ଗୁମ୍ଫାରେ ପଶି ସମାଧିସ୍ଥ ହେବି । କେତେ କାଳ ପାଇଁ, କହିପାରୁ ନାହିଁ । କିନ୍ତୁ ମୁଁ ଯେଉଁ ଅଦ୍ଭୁତ ତରଭୁଜ ଉପୁଜାଇବା ପାଇଁ ଛାଡ଼ିଯିବି, ସେ ତା'ର କାମ କରି ଚାଲିଥିବ । ତୁ ସବୁଦିନ ସୂର୍ଯ୍ୟାସ୍ତ ବେଳେ ଏଠାକୁ ଆସି ପରଦିନ କେତେ ପେଟ ପାଇଁ ତରଭୁଜ ଲୋଡ଼ା, ସେକଥା କହିଦେଇ ଯିବୁ । ସକାଳ ହେବା ବେଳକୁ ସେହି ଅନୁସାରେ ତରଭୁଜଟି ଆକାର ଧାରଣ କରିଥିବ । ସମସ୍ତଙ୍କୁ ତାହା କାଟି ବିତରଣ କରିବୁ । ଯିଏ ଥରେ ତାହାର ସ୍ୱାଦ ପାଇବ, ଅନ୍ୟ ସବୁ ଖାଦ୍ୟ ପଦାର୍ଥ ତାକୁ ତୁଚ୍ଛ ମନେ ହେବ !"

ଲୋକଟି ବିଦାୟ ନେଲା ଓ କେଇଦିନ ପରେ ତା' ପରିବାର ଓ ବନ୍ଧୁବାନ୍ଧବଙ୍କୁ ଧରି ପୁଣି ଆସି ପହଞ୍ଚିଲା । ପାହାଡ଼ ତଳେ ସେମାନେ ନିର୍ମାଣ କଲେ ଛୋଟ ଛୋଟ କୁଡ଼ିଆମାନ । ଯୋଗୀ ସେମାନଙ୍କୁ ବୁଝାଇଲେ କି ସତ୍ୟ କ'ଣ ଜାଣିବା ହେଲା ଜୀବନର ଲକ୍ଷ୍ୟ ! ବର୍ତ୍ତମାନ ସେମାନଙ୍କୁ ତ ଆଉ ପେଟ ପାଇଁ ଖଟିବାକୁ



ହେବ ନାହିଁ, ଅତଏବ ସେମାନେ ପ୍ରକୃତି କୋଳରେ ଶାନ୍ତିରେ ରହି ସତ୍ୟର ସନ୍ଧାନରେ ଧ୍ୟାନ, ସାଧନା ଇତ୍ୟାଦି କରିବା ଉଚିତ । ଧ୍ୟାନ କପରି କରିବାକୁ ହୁଏ, ତାହା ସେ ସେମାନଙ୍କୁ ଶିଖାଇଲେ । ଅକାରଣ ଈର୍ଷ୍ୟା ଉତ୍କଣ୍ଠା, ଅଯଥା ଦ୍ୱନ୍ଦ୍ୱ ପ୍ରତିଯୋଗିତାରୁ କପରି ଦୂରରେ ରହିବା ସମ୍ଭବ, ତାହାବି ।

ଦୈନିକ ପାହାଡ଼ ଶୀର୍ଷରେ ସେ ଯୌଗିକ ତରଭୂଜର ଆବିର୍ଭାବ ହେବାକୁ ଲାଗିଲା । ଲୋକେ ପରମ ସନ୍ତୋଷରେ ରହିଲେ । ଯୋଗୀ ଗୁମ୍ଫାରେ ପ୍ରବିଷ୍ଟ ହେଲେ ଓ ଦ୍ୱାର ବନ୍ଦ କଲେ । ଯୁଗ ପରେ ଯୁଗ ବିତିଯିବାକୁ ଲାଗିଲା ।

ରାଜୁ ଏକାଗ୍ର ଭାବରେ ଶୁଣିଲା ଏ କାହାଣୀ । "ଯୋଗୀବର ! ଏ ସହର ସେହି ତରଭୂଜ-ଭକ୍ଷୀ ଭାଗ୍ୟବାନମାନଙ୍କର ବଂଶଧରବର୍ଗ ନିର୍ମାଣ କରିଥିବେ । ତରଭୂଜ ଲତା ତ ରହିଛି । ହୁଏତ ଏ ଯାବତ୍ ସେମାନେ ତରଭୂଜ ସଂଗ୍ରହ କରୁଥିବେ ।" ସେ କହିଲା ।

"ଚାଲ । ଥରେ ତଳକୁ ଯାଇ ବୁଲି ଆସିବା ।" ଯୋଗୀ ପ୍ରସ୍ତାବ ଦେଲେ ।

ପାହାଡ଼ ଦେହରେ ଖୋଦିତ ହୋଇଥିଲା ସୁଦୃଶ୍ୟ ପାହାଚମାଳା । ଦୁଇ ପାଖରେ ଥିଲେ ଫୁଲ ଗଛମାନ । ଦୁହେଁ ପାଦଦେଶରେ ପହଞ୍ଚି ଦେଖିଲେ, ପାହାଚ ଆଗରେ ଫାଟକ । ତାକୁ ଜଗିଛନ୍ତି ଦୁଇଜଣ ବଳିଷ୍ଠ ପ୍ରହରୀ । ଫାଟକ ସେପାଖରେ ଉତ୍କଣ୍ଠିତ ଭାବରେ ଅପେକ୍ଷା କରିଛନ୍ତି ଦଳେ ନରନାରୀ । ସେମାନଙ୍କ ମୁଖ ପାନି ପ୍ରହରୀମାନଙ୍କୁ କହିଲେ, "ଆମେ ପର୍ଯ୍ୟଟକଦଳ । ପାହାଡ଼ ଉପରକୁ ଯିବାକୁ ଚାହୁଁ । ସୁନ୍ଦର ପାହାଚ ରହିଛି । ମନା କରୁଛ କାହିଁକି ?"

"ଏ ପାହାଡ଼ ଉପରେ ଯୌଗିକ ତରଭୂଜ ଫଳେ ବୋଲି କ'ଣ ଜଣା ନାହିଁ ? କେବଳ ଜଣେ ମାତ୍ର ସ୍ୱଇଚ୍ଛାରେ ଏ ପାହାଚ ଚଢିବାକୁ ହକ୍‌ଦାର । ସେ ହେଲେ ସର୍ଦ୍ଦାର । ସେ ତରଭୂଜର ଆକାର ବିଚାର କରି ଆସନ୍ତି । ପରଦିନ ତାଙ୍କ ଆଦେଶ ପାଇଲେ ଅନ୍ୟମାନେ ଯାଇ ତରଭୂଜଟି ନେଇ ଆସନ୍ତି ।" ଜଣେ ପ୍ରହରୀ ବୁଝାଇ ଦେଲା ।



"ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ !" ରାଜୁ ପ୍ରାୟ ପାଟି କରି ଉଠିଲା । କିନ୍ତୁ ପ୍ରହରୀ ଦୁଇଜଣ ଶୁଣିପାରିଲେ ନାହିଁ ।

ସହରର ରାସ୍ତାଘାଟ ପରିଛନ୍ନ ଓ ଉଜ୍ଜ୍ୱଳ । ସେମାନେ ପ୍ରଧାନ ରାସ୍ତା ଦେଇ ଅଗ୍ରସର ହୋଇ ଗୋଟିଏ ବିରାଟ କକ୍ଷ ଆଗରେ ପହଞ୍ଚିଲେ । ସେଠି, ପ୍ରବେଶ ତୋରଣ ଉପରେ "ନୀରବ ରୁହ !" ବୋଲି ସତର୍କବାଣୀ ଯେ କୌଣସି ଲୋକର ଦୃଷ୍ଟି ଆକର୍ଷଣ କରିବ । କକ୍ଷ ଆଗରେ କେତେଜଣ କର୍ମଚାରୀ ବୁଲୁଥିଲେ ଓ ବାରମ୍ବାର ଭିତରକୁ ଦୃଷ୍ଟିପାତ କରୁଥିଲେ ।

"ଏ ସ୍ଥାନଟି ସେ ଯୁଗରେ ଥିଲା ଏକ ମନୋରମ ଉପବନ । ଏ ପରିବେଶରେ ସେମାନେ କ'ଣ କରିବେ, ସେକଥା ସେମାନଙ୍କୁ ମୁଁ କିଛି ଆୟାସ କରି ଶିଖାଇଥିଲି । ଉପବନ ଉତ୍ପାଟିତ କରି ଲୋକେ କାହିଁକି ଏ ବିଶାଳ କକ୍ଷ ନିର୍ମାଣ କରିଛନ୍ତି ? ଚାଲ ଭିତରକୁ । ଦେଖିବା ।" ଯୋଗୀ କହିଲେ ।

କକ୍ଷ ଭିତରେ, ବିଭିନ୍ନ ଆରାମ ଚୌକି ଓ ଶଯ୍ୟାରେ ଶୋଇଥିଲେ ଶତାଧିକ ନରନାରୀ । କେହି କେହି ପ୍ରବଳ ଘୁଙ୍ଘୁଡ଼ି ମାରୁଥିଲେ । ଯୋଗୀ ଓ ରାଜୁ କିଛି ବୁଝି ପାରିଲେ ନାହିଁ । ସେମାନେ ଦେଖିଲେ, କର୍ତ୍ତବ୍ୟରତ କର୍ମଚାରୀ-ମାନେ ଛୋଟ ଛୋଟ ଯନ୍ତ୍ର ସାହାଯ୍ୟରେ କାହା ଘୁଙ୍ଘୁଡ଼ି କେତେ ପ୍ରବଳ, ତାହା ମାପୁଛନ୍ତି । କିଏ କେତେ ସମୟ ପର୍ଯ୍ୟନ୍ତ ଥରେ ବି ଆଖି ନ

ଯୋଗୀ ରାଜୁଙ୍କୁ କହିଲେ, "ସେ ସର୍ଦ୍ଦାର ନିଶ୍ଚୟ ଏକଦା ଏକାକୀ ଏଠି ଆସି ପହଞ୍ଚିଥିବା ରାଖାଲ ଲୋକଟିର ବଂଶଧର ।" ଏହା କହି ସେ ଫାଟକ ଅତିକ୍ରମ କରି ସହର ଭିତରେ ପାଦଦେଲେ । ତାଙ୍କୁ ଅନୁସରଣ କଲା ରାଜୁ ।

"ଆଜ୍ଞା, ପ୍ରହରୀମାନେ ଆମକୁ ବାଧା ଦେଲେ ନାହିଁ । ଏହା ତ ବେଶ ଆଶ୍ଚର୍ଯ୍ୟର କଥା !"

"ସେଇଟା ଆଶ୍ଚର୍ଯ୍ୟର କଥା ନୁହେଁ । ଯାହା ତୁମକୁ ବର୍ତ୍ତମାନ ପ୍ରକୃତ ଆଶ୍ଚର୍ଯ୍ୟ ବୋଲି ମନେ ହେବ, ତାହା ହେଉଛି, ଆମେ ଦୁହେଁ ଆପାତତଃ ଅଦୃଶ୍ୟ ଅବସ୍ଥାରେହିଁ ବିଚରଣ କରୁଛୁଁ । ଏପରିକି ଆମ କଥାବାର୍ତ୍ତା ବି ଅନ୍ୟମାନେ ଶୁଣିପାରୁ ନାହାନ୍ତି ।"

ଖୋଲି ବା ପାଖ ନ ଲେଉଟାଇ ନିଦ୍ରିତ ରହିଛି, ତା'ର ହିସାବ ବି ରଖାଯାଉଥିଲା ।

ହଠାତ୍ ଜଣେ ସ୍ଥୂଳକାୟ ନିଦ୍ରିତ ବ୍ୟକ୍ତିଙ୍କ ଘୁଙ୍ଘୁଡ଼ି ପ୍ରବଳରୁ ପ୍ରବଳତର ପର୍ଯ୍ୟାୟରେ ଯାଇ ପହଞ୍ଚିଲା । ଜଣେ କର୍ମକର୍ତ୍ତା ଅନ୍ୟଜଣଙ୍କୁ କହିଲେ, "ଆଜି ଇଏ ପ୍ରଥମ ହେବେ !"

ରାଜୁ ଲକ୍ଷ୍ୟ କଲା, ଯୋଗୀଙ୍କ ମୁହଁ କ୍ରମେ ଲାଲ୍ ଦେଖାଯାଉଛି । ଅକସ୍ମାତ୍ ଯୋଗୀ ଚୌକି ଶେଯ ଇତ୍ୟାଦି ଦେହରେ ଗୋଇଠା ମାରିବାକୁ ଆରମ୍ଭ କଲେ ଓ କିଛି କିଛି ଓଲଟାଇ ଦେଲେ । ଘୁଙ୍ଘୁଡ଼ି ମାରୁଥିବା ଲୋକଙ୍କ ଚୁଟି ଝିଙ୍କି ଉଠାଇ ଦେଲେ । ଯୋଗୀଙ୍କ ଦେଖାଦେଖି ରାଜୁବି ପ୍ରବଳ ଉତ୍ସାହରେ ସେଇଆ କଲା । ମୁହୂର୍ତ୍ତକ ଭିତରେ ଭୀଷଣ ରଡ଼ି, ଆର୍ତ୍ତନାଦରେ ସେ କକ୍ଷ ପ୍ରକମ୍ପିତ ହେଲା । ସମସ୍ତେ ଆତଙ୍କିତ ଦୃଷ୍ଟିରେ ପରସ୍ପର ଅନାଅନି ହୋଇ କକ୍ଷ ବାହାରକୁ ପଳାଇବାକୁ ବ୍ୟସ୍ତ ହେଉଥାନ୍ତି । କର୍ମକର୍ତ୍ତାମାନେ ବିହ୍ୱଳ ଭାବରେ ଅନାଇଥାନ୍ତି । ଅଦୃଶ୍ୟ ଯୋଗୀ ଓ ରାଜୁ ଏ ବିଭ୍ରାଟ ଉପୁଜାଇ କକ୍ଷରୁ ବାହାରି ଆସିଲେ ।

"ବାବା ! ଆପଣ ଏମିତି କ୍ରୁଦ୍ଧ ହେଲେ କାହିଁକି ?" ରାଜୁ ନିଜ କ୍ଲାନ୍ତ ହାତ ପାପୁଲି ଦଳି ଦଳି ପଚାରିଲା ।

ଯୋଗୀ କହିଲେ, "ଆଖି ବୁଜି କପଟ ଧ୍ୟାନ କରିବାକୁ ହୁଏ, ମୁଁ ସେହି ବିଦ୍ୟା ଶିଖାଇଥିଲି । ଧ୍ୟାନ କଥା ଏମାନେ ଭୁଲିଯାଇ ଶୋଇବାରେ କିଏ କେତେ ଧୁରନ୍ଧର, ବର୍ତ୍ତମାନ ତାହାର ଉପରେ ପ୍ରତିଯୋଗିତା କରୁଛନ୍ତି ! ହାୟ ହତଭାଗ୍ୟ ମଣିଷ ।"

ଦୁହେଁ ମନ୍ଦିର ଭଳି ଦିଶୁଥିବା ଏକ ଗୃହ ପାଖରେ ପହଞ୍ଚିଲେ ଓ ଭିତରକୁ ଗଲେ । ସହରର ପ୍ରତିନିଧି ସଭାର ବୈଠକ ଆରମ୍ଭ ହେଉଥିଲା । ପ୍ରତିନିଧିମାନଙ୍କ ଆଗରେ କିଛି କହିବାକୁ ପ୍ରସ୍ତୁତ ହେଉଥିଲେ ଜଣେ ଦୀର୍ଘକାୟ ଯୁବକ । ସେ ଯୁବକ ସହରର ସର୍ଦ୍ଦାର ବୋଲି ବୁଝି ହେଉଥିଲା । (କ୍ରମଶଃ)






# ବିଦ୍ୟା ଅବିଦ୍ୟା

ନିଶା ଗରଜୁଥାଏ । ଭୁହାକୁ ଭୁହା ବର୍ଷା ହେଉଥାଏ । ସାଇଁ ସାଇଁ ଶୀତଳ ପବନରେ ଗଛଲତା ଭିତରୁ ଅନର୍ଗଳ ନାନା ପ୍ରକାର ଶବ୍ଦ ବାହାରୁଥାଏ । ଘଡ଼ଘଡ଼ି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ, ତାକୁ କାନ୍ଧରେ ପକାଇ ସେ ସେହି ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲେ, "ରାଜା ! ତମେ କୌଣସି ବିଶେଷ କାର୍ଯ୍ୟ ହାସଲ କରିବା ପାଇଁ ଏଭଳି ଦୁର୍ଯ୍ୟୋଗପୂର୍ଣ୍ଣ ରାତିରେ ଏଠାରେ ଏ

## ବେତାଳ କଥା



ପରିଶ୍ରମ କରୁଛ । ଏ କାମ କରିଦେଲେ ବଦଳରେ ତମକୁ କିଛି ଦେବା ନିମନ୍ତେ କେହି ହୁଏତ କୌଣସି ପ୍ରତିଶ୍ରୁତି ଦେଇଥାଇପାରେ । କିନ୍ତୁ ଜାଣିରଖ, ପ୍ରତିଶ୍ରୁତି ଦେବା ଓ ପ୍ରତିଶ୍ରୁତି ପାଳନ କରିବା ଭିତରେ ବହୁତ ପାର୍ଥକ୍ୟ । ଗୋଟାଏ କାହାଣୀ କହୁଛି, ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲଘବ ମନେ ହେବ ।"

ବେତାଳ ଗପିଲା: ପୁରନ୍ଦରପୁର ନାମକ ଗ୍ରାମରେ ଶିବ ମିଶ୍ର ନାମକ ପଣ୍ଡିତ ଥିଲେ । ସେ ଗାଁର ପିଲାମାନଙ୍କୁ ପାଠ ପଢ଼ାଇ ସାମାନ୍ୟ ଯାହା ଉପାର୍ଜନ କରୁଥିଲେ, ସେଥିରେ ପରିବାର ପ୍ରତିପାଳନ ପାଇଁ ତାଙ୍କୁ ବହୁତ କଷ୍ଟ ସ୍ୱୀକାର କରିବାକୁ ପଡୁଥିଲା । ଦିନେ ପଣ୍ଡିତ ଅତ୍ୟନ୍ତ ମନ ଖରାପ କରି ଘରୁ ବାହାରି ଚାଲିଗଲେ । ଗାଁ ବାହାରେ ଶ୍ମଶାନ ପାଖରେ ଗୋଟାଏ ପୁରୁଣା ଗଛ ଥିଲା । ସେଇଠି ସେ ବସି ପଡିଲେ । ସୂର୍ଯ୍ୟାସ୍ତ ହୋଇଗଲା । ଚତୁର୍ଦ୍ଦିଗ ନିର୍ଜନ । ହଠାତ୍ ଉପର ଡାଳଟି ଦୋହଲିଲା । ଜଣେ ଲଂଫ ଦେଇ ତାଙ୍କ ଆଗରେ ଠିଆ ହୋଇଗଲା ।

ପ୍ରଥମେ ପଣ୍ଡିତେ କିଛି ବୁଝିପାରିଲେ ନାହିଁ । ତା'ପରେ ତାଙ୍କ ଆଗରେ ଧିରେ ଧିରେ ଗୋଟାଏ ବାଳକର ବାୟୁବାୟୁ ରୂପ ଦେଖାଗଲା । ପଣ୍ଡିତେ ବୁଝିଲେ, ସେ ଗୋଟିଏ ଭୂତ । ସେ ଭୀଷଣ ଡରିଗଲେ ଓ ଥରିବାକୁ ଲାଗିଲେ ।

"ପଣ୍ଡିତେ! ଜୁହାର ।" ବାଳକ ଭୂତ କହିଲା । ତା'ର ନରମ କଣ୍ଠସ୍ୱର ଶୁଣି ପଣ୍ଡିତଙ୍କ ମନରେ ଟିକିଏ ଦମ୍ଭ ଆସିଲା ।

"ତମେ କେଉଁଠି ଥିଲ? କିଏ ତମେ?"

"ମୁଁ ବଡ଼ ହତଭାଗ୍ୟ । ପିଲାବେଳରୁ ବାପା ମା'ଙ୍କୁ ହରାଇ ବଡ଼ ଦୁଃଖରେ ଥିଲି । ଶେଷକୁ ଦିନେ ନଈକୁ ଡେଇଁପଡି ପ୍ରାଣ ହରାଇଲି । ଫଳରେ ଭୂତ ହୋଇ ଏହି ଗଛରେ ରହୁଛି ।" ବାଳକ ଭୂତ କହିଲା ।

"ମୋଠୁଁ କ'ଣ ଆଶା କରୁଛ?"

"ପିଲାବେଳେ ପାଠ ପଢିବି ବୋଲି ବହୁତ ଆଶା କରିଥିଲି । କିନ୍ତୁ ହୋଇପାରିଲା ନାହିଁ । ଦୁଃଖ ଦାରିଦ୍ର୍ୟରେ ହନ୍ତସନ୍ତ ହୋଇ ଶେଷକୁ ଆତ୍ମହତ୍ୟା ଭଳି ଭୁଲ କଲି । ମୋତେ ତୁମେ ପାଠ ପଢ଼ାଅ!" ବାଳକ ଭୂତ କହିଲା ।

ସେତେବେଳକୁ ପଣ୍ଡିତଙ୍କର ଭୟ କଟି ଯାଇଥାଏ । ସେ କହିଲେ, "ଆରେ ବାବୁ, ମୋ ଅବସ୍ଥା ତୋଠୁଁ ଭଲ ନୁହେଁ । ମୁଁ ବଡ଼ ଦୁଃଖରେ ଅଛି । ତୋତେ ପାଠ ପଢ଼ାଇବାକୁ ମୋର ଉତ୍ସାହ ଆସିବ କାହିଁ ?"

"ତମେ ଜଣେ ବଡ଼ ପଣ୍ଡିତ ବୋଲି ମୁଁ ଜାଣେ । ଲୋକେ ତମକୁ ବହୁତ ସମ୍ମାନ କରୁଥିବେ । ତମେ ଦୁଃଖରେ ଅଛ କାହିଁକି ?"

"କେହି ମୋତେ ପଚାରନ୍ତି ନାହିଁ । ପଇସା-ପତ୍ର ଯାହା ମିଳେ, ସେଥିରେ ଦୁଇଓଳି ଖାଦ୍ୟ ବି ଯୋଗାଡ଼ ହୋଇ ପାରେନାହିଁ ।" ପଣ୍ଡିତ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ ।



ବାଳକ ଭୂତ କହିଲା, "ଜୀବନ କାଳରେ ସିନା ହାତରେ ପଇସା ପଡ଼ିଲା ନାହିଁ, କିନ୍ତୁ ଏବେ ମୁଁ ଇଚ୍ଛା କଲେ ରାଜାଙ୍କ ଭଣ୍ଡାରଘରରୁ ସୁନା ଟଙ୍କା ବୋହି ନେଇ ଆସି ପାରିବି । ମୋତେ ପଢ଼ାଅ । ମୁଁ ବିଦ୍ୟାର୍ଜନ କଲେ କେଡ଼େ ମହତ୍ ହେବ !"

"ହେଉ, ପଢ଼ାଇବି । କିନ୍ତୁ ପ୍ରଥମେ ମୋତେ ହଜାରେ ସ୍ୱର୍ଣ୍ଣମୁଦ୍ରା ଆଣି ଦେ ।"

"କାଲି ଏତିକବେଳକୁ ଏଠାକୁ ଥଳି ଧରି ଆସିବ ।" ବାଳକ ଭୂତ କହିଲା ।

ପଣ୍ଡିତେ ଘରକୁ ଫେରିଗଲେ । ଉତ୍କଣ୍ଠା ଓ କୌତୁହଳରେ ସେ ରାତିଯାକ ଶୋଇପାରିଲେ ନାହିଁ । ପରଦିନ ସୂର୍ଯ୍ୟାସ୍ତ ପରେ ସେ ଥଳି ଧରି ଶ୍ମଶାନ ପାଖକୁ ଆସିଗଲେ । ଭୂତ ତାଙ୍କ ଥଳିରେ ହଜାରେ ସ୍ୱର୍ଣ୍ଣମୁଦ୍ରା ଓଜାଡ଼ି ଦେଲା । ଖୁସିରେ ପଣ୍ଡିତେ କଥା କହିପାରିଲେ ନାହିଁ ।

"ଏଥର ମୋତେ ପାଠ ପଢ଼ାଅ ।"

"ବାବୁରେ ! ମୋତେ କିଛି ବିଦ୍ୟା ଶିଖାଇ ଦିଅନ୍ତୁ ନାହିଁ ? ଧର, ପାଣି ଉପରେ ମୁଁ ଚାଲି ପାରନ୍ତି, ନିଆଁ ଖାଲି ହାତରେ ଧରି ପାରନ୍ତି !" ପଣ୍ଡିତେ କହିଲେ ।

"ଆଚ୍ଛା ହେଉ । ଶିଖାଇଦେଲେ ମୋତେ ପାଠ ପଢ଼ାଇବ ତ ?" ବାଳକ ଭୂତ ପଚାରିଲା ।

"ନିଶ୍ଚୟ, ନିଶ୍ଚୟ !" ପଣ୍ଡିତେ କହିଲେ ।

ବାଳକ ଭୂତ ସେଉଠୁ ତାଙ୍କୁ ଖଣ୍ଡିଏ ଛୋଟିଆ ହାଡ଼ ଧରାଇ ଦେଇ କହିଲା, "ଏ ଖଣ୍ଡିକ ଅଣ୍ଟିରେ ଖୋସିଥିଲେ ପାଣି ଉପରେ



ଦେଇ ଚାଲି ପାରିବ । ନିଆଁ ହାତରେ ଧରିଲେ ବି କିଛି ହେବ ନାହିଁ ।"

ପଣ୍ଡିତେ ଖୁସି ହୋଇ ଚାଲିଗଲେ ।

ଏହାପରେ ଛଅମାସ ବିତିଗଲା । ବାଳକ ଭୂତ ଅପେକ୍ଷା କରିଥାଏ । କିନ୍ତୁ ପଣ୍ଡିତଙ୍କର ଦେଖା ମିଳିଲା ନାହିଁ । ଦିନେ ବାଳକ ଭୂତ ଅଦୃଶ୍ୟ ଭାବରେ ଗାଁ ଭିତରେ ଯାଇ ପହଞ୍ଚିଲା । ବଡ଼ ପୋଖରୀ କୂଳରେ ଅନେକ ଲୋକ ଠିଆ ହୋଇଥାନ୍ତି । ପଣ୍ଡିତେ ପାଣି ଉପରଦେଇ ଚାଲୁଛନ୍ତି । ବାଳକ ଭୂତ ଅପେକ୍ଷା କଲା । ପଣ୍ଡିତେ ପାଣି ପାରି ହୋଇ ଆସିବା ମାତ୍ରେ ଗାଁ ଜମିଦାର ଓ ଅନ୍ୟମାନେ ପଣ୍ଡିତଙ୍କ ଗୋଡ଼ତଳେ ପଡ଼ିଗଲେ । ପଣ୍ଡିତେ ଖୁସିରେ ଫାଟି ପଡୁଥାନ୍ତି ।

ବାଳକ ଭୂତ ପଣ୍ଡିତଙ୍କୁ ଅନୁସରଣ କରି ତାଙ୍କ ଘରକୁ ଗଲା । ଦେଖିଲା, ଘରର ଅବସ୍ଥା ବଦଳି ଯାଇଛି । କେତେ ବଖରା କୋଠାଘର ତିଆରି ହୋଇଛି । ଭୂତ ବୁଝିଲା, ଏହା ସେହି ହଜାରେ ସ୍ୱର୍ଣ୍ଣମୁଦ୍ରାର କରାମତି ।

ପଣ୍ଡିତଙ୍କୁ କେତେ ଲୋକ ଦେଖା କରିବାକୁ ଆସୁଥାନ୍ତି । ଜଣେ ଆସି ତାଙ୍କୁ ପ୍ରଣାମ କରି କହିଲା, "ପଣ୍ଡିତେ ! ଆପଣ ଇଚ୍ଛା କଲେ କ'ଣ ନ କରିପାରିବେ ? ମୋ ପ୍ରତିବେଶୀ ମୋର ଭୀଷଣ ଶତ୍ରୁ । ତାକୁ ଦମନ କରନ୍ତୁ ।"

"ହେଉ ଦେଖିବା । ସେଥିପାଇଁ ତମକୁ ବେଶ୍ କିଛି ଖର୍ଚ୍ଚ କରିବାକୁ ପଡ଼ିବ ।"

ଲୋକଟି ତାଙ୍କ ପାଦ ପାଖରେ ଶହେ ଟଙ୍କା ରଖିଦେଲା ଓ କହିଲା, "ଏତିକି ରହିଲା । ଆଉ ପରେ ।" ଲୋକଟି ଚାଲିଯିବା ପରେ ତିନିଜଣ ବାଳକ ଆସି ପଣ୍ଡିତଙ୍କୁ ପ୍ରଣାମ କରି କହିଲେ, "ଗୁରୁଜୀ ! ଆଜିକୁ ଛଅମାସ ହେଲା ପାଠପଢ଼ା ବନ୍ଦ ହେଲାଣି । କେବେ ପୁଣି ଆରମ୍ଭ ହେବ ?"

"ବେଳ କାହିଁ ? ଦେଖୁନାହିଁ ମୁଁ କେତେ ବ୍ୟସ୍ତ ?" ପଣ୍ଡିତେ ରୁକ୍ଷ ଭାବରେ କହିଲେ ।

ପିଲାମାନେ ନୀରବରେ ଠିଆ ହୋଇ ରହିଲେ ।

"ଯାଅ । ମୁଁ ଆଉ ଏଣିକି ପାଠ ପଢ଼ାଇ ପାରିବି ନାହିଁ ।" ପଣ୍ଡିତେ କହିଦେଲେ ।

ପିଲାମାନେ ଚାଲିଗଲେ ।

"ପାଠ ପଢ଼ାଇ ପାରିବ ନାହିଁ ? ମୋତେ ଧରି ପଢ଼ାଇବ ବୋଲି କଥା ଦେଇଛ ?"

ବାଳକ ଭୂତ ହଠାତ୍ ବାୟୁବାୟୁ ରୂପ ଗ୍ରହଣ କରି ପଚାରିଲା ।

ପଣ୍ଡିତେ ଚମକି ପଡ଼ିଲେ ଓ ସଳଖି ବସି କହିଲେ, "ଆରେ ବାବୁ, ତୋତେ କ'ଣ ପଢ଼ାଇବି ନାହିଁ ବୋଲି କହିଲି ? ସେମାନଙ୍କୁ କହିଲି । ତୋତେ ନିଶ୍ଚୟ ପଢ଼ାଇବି ।"

"ମିଥ୍ୟାବାଦୀ !" ବାଳକ-ଭୂତ ହଠାତ୍ ତୀକ୍ଷ୍ଣ କଣ୍ଠରେ କହିଲା ।

ପଣ୍ଡିତେ ଡରିଗଲେ । ସେ ବିନୟୀ ଭାବରେ କହିଲେ, "ନା, ନା, ମୁଁ ମିଥ୍ୟାବାଦୀ ନୁହେଁ । ମୁଁ ତମକୁ ପଢ଼ାଇବି । ଏହିକ୍ଷଣି ଆରମ୍ଭ କରିବା । ମୁଁ କବାଟ ବନ୍ଦ କରିଦିଏଁ ।"

"ତମେ ମିଥ୍ୟାବାଦୀ ନୁହଁ ? ସେ ଲୋକଠୁଁ ଶହେଟଙ୍କା ରଖିଲ କ'ଣ ପାଇଁ ? ତମେ ତା' ପ୍ରତିବେଶୀର କ'ଣ କରିପାରିବ ?" ବାଳକ ଭୂତ ଧମକ ଦେଇ ପଚାରିଲା ।

ପଣ୍ଡିତେ ଚୁପ୍ ରହିଲେ । ତା'ପରେ କହିଲେ, "ମୁଁ ତମକୁ ଏହିକ୍ଷଣି ପଢ଼ାଇବି ।"

"ଦରକାର ନାହିଁ । ମୋର ବିଦ୍ୟାର୍ଜନ ହୋଇଗଲା । ତମେ ଯଦି ନିଜର ସର୍ବନାଶ ନ ଚାହଁ, ତେବେ ଗ୍ରାମ୍ୟ ବାଳକମାନଙ୍କୁ ପୂର୍ବ ପରି ପାଠ ପଢ଼ାଅ ।" ବାଳକ ଭୂତ କହିଲା ।

"ସର୍ବନାଶ ନ ଚାହେଁ ମାନେ ? ତମେ କ'ଣ ମୋର ସର୍ବନାଶ କରିବ ? ମୋ ଟଙ୍କା ପଇସା ଚାଲିଯିବ ?" ପଣ୍ଡିତେ ଆତଙ୍କିତ ହୋଇ ପଚାରିଲେ । "ମୂଢ଼! ତମ ସର୍ବନାଶ ତମେ ନିଜେ କରୁଛ । ମୁଁ ଚାଲିଲି ।" ଏହା କହି ବାଳକ ଭୂତ ଚାଲିଗଲା । ପଣ୍ଡିତେ ସ୍ତବ୍ଧ ହେଲେ ।



ବେତାଳ ଟିକିଏ ଚୁପ୍ ରହି ତା'ପରେ କଣ୍ଠସ୍ୱର ତୀବ୍ର କରି ପଚାରିଲା, "ରାଜା! ମୋର କେତେକ ସନ୍ଦେହ ରହି ଯାଇଛି। ବାଳକ ଭୂତ ପାଠ ପଢିବାକୁ ଏତେ ଆଗ୍ରହୀ ଥିଲା। ସେ ହଠାତ୍ ପଢ଼ିବାକୁ ମନା କଲା କାହିଁକି? ତା'ର ବିଦ୍ୟାର୍ଜନ ହୋଇ ଯାଇଛି ବୋଲି ସେ କାହିଁକି କହିଲା? ପଣ୍ଡିତଙ୍କୁ ମୂଢ ବୋଲି କାହିଁକି କହିଲା? ମୋ ପ୍ରଶ୍ନ ସବୁର ଉତ୍ତର ଦିଅ। ଉତ୍ତର ଦେବାର ଶକ୍ତିଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ପାଣି ଉପରେ ଗାରବା ଭଳି ହିବୁ ବିଦ୍ୟା ହେଲା ପ୍ରକୃତରେ ଅବିଦ୍ୟା। ବାଳକ ଭୂତ ଦେଖିଲା, ଯେଉଁ ପଣ୍ଡିତଙ୍କ ବିଦ୍ୟା ପ୍ରତି ଲୋକଙ୍କର ସମ୍ମାନ ନଥିଲା, ସେ ପଣ୍ଡିତଙ୍କର ଅବିଦ୍ୟା ପ୍ରତି ଲୋକଙ୍କର ସମ୍ମାନର ଅନ୍ତ ନାହିଁ। ପଣ୍ଡିତେ ଏତେ ପାଠ ପଢିଥିବା ସତ୍ତ୍ୱେ ତାଙ୍କୁ ରାଜାଙ୍କ ଗନ୍ତାଘରୁ ଚୋରି କରିବାକୁ ଉତ୍ସାହ ଦେଲେ, ପୁଣି ମିଥ୍ୟାଚାର ଦ୍ୱାରା ଅନ୍ୟଠୁଁ ଟଙ୍କା ଆଣିବାକୁ ବି ତାଙ୍କର ସଙ୍କୋଚ ନାହିଁ। ତେଣୁ ପାଠଶାଠ ପଢି ନିଜର ଚରିତ୍ରର ବିକାଶ କରିବ ବୋଲି ବାଳକ ଭୂତର ଯେଉଁ ଧାରଣା ଥିଲା, ସେ ଧାରଣା ଦୂର ହୋଇଗଲା। ଏହାକୁହିଁ ସେ ତା'ର ବିଦ୍ୟାର୍ଜନ ବୋଲି ଆଖ୍ୟା ଦେଲା। ସ୍ୱଭାବର ପରିବର୍ତ୍ତନ ପାଠରେ ହୁଏ ନାହିଁ, ସତ୍ୟ ନିଷ୍ଠା ଦ୍ୱାରା ହୁଏ। ସେ ପଣ୍ଡିତଙ୍କୁ ମୂଢ଼ ବୋଲି କହିବାର କାରଣ, ଅବିଦ୍ୟା ଓ ମିଥ୍ୟାଚାର ଦ୍ୱାରା ସେ ନିଜ ଆତ୍ମାର ସର୍ବନାଶ କରୁଛନ୍ତି, ଏତକ ସେ ବୁଝିପାରୁ ନଥିଲେ। ସର୍ବନାଶ ବୋଇଲେ ସେ କେବଳ ସମ୍ପତ୍ତି ନାଶକୁ ବୁଝୁଥିଲେ। ଅବିଦ୍ୟା ତାଙ୍କୁ ଏତେ ଆଚ୍ଛନ୍ନ କରିଥିଲା।"

ରାଜାଙ୍କ ଉତ୍ତରଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡିଲା।

(କଳ୍ପିତ)





# ଯୋଗ୍ୟ ଝାଡୁଦାର

ପ୍ରାଚୀନ କାଳର କଥା । ଉତ୍କଳରେ ରାଜୁତି କରୁଥିଲେ ମହାରାଜା ପୁରୁଷୋତ୍ତମ ଦେବ । ସେ ଥିଲେ ଶ୍ରୀଜଗନ୍ନାଥଙ୍କର ଏକାନ୍ତ ଭକ୍ତ । ସେ ପ୍ରଭୁଙ୍କ ନାମରେହିଁ ରାଜ୍ୟ ଶାସନ କରୁଥିଲେ ।

ଲୋକେ ସୁଖ ଶାନ୍ତିରେ ରହୁଥିଲେ ।

ଥରେ ଯୁବକ ରାଜା ଦାକ୍ଷିଣାତ୍ୟ ଭ୍ରମଣରେ ଯାଇ କାଞ୍ଚି ମହାରାଜାଙ୍କ ଅତିଥି ହୋଇଥାନ୍ତି । ରାଜକନ୍ୟା ପଦ୍ମାବତୀଙ୍କୁ ଦେଖି ସେ ମୁଗ୍ଧ ହେବାର ଜାଣି ତାଙ୍କ ମନ୍ତ୍ରୀ କାଞ୍ଚି ରାଜାଙ୍କୁ ପ୍ରସ୍ତାବ ଦେଲେ କି ପୁରୁଷୋତ୍ତମ ଦେବଙ୍କ ସହ ପଦ୍ମାବତୀଙ୍କ ବିବାହ ହେଉ । କାଞ୍ଚି ରାଜା ଆନନ୍ଦରେ ସମ୍ମତି ଦେଲେ । ମହାନ୍ ଉତ୍କଳର ସୁଯୋଗ୍ୟ ନରପତିଙ୍କୁ ଜାମାତା ରୂପେ ପାଇବା ସୌଭାଗ୍ୟ ଛଡ଼ା ଆଉ କ'ଣ ହୋଇପାରେ ?

ଏଣେ ରଥଯାତ୍ରା ସମୟ ନିକଟ ହୋଇ ଆସୁଥାଏ । ପୁରୁଷୋତ୍ତମ ଦେବଙ୍କୁ ସହଳ ସହଳ ପୁରୀ ଲେଉଟି ଆସିବାକୁ ହେଲା । ବିବାହ ପ୍ରସ୍ତାବ ପକ୍କା କରିବା ନିମନ୍ତେ କାଞ୍ଚି ରାଜାଙ୍କ ବୟସ୍କ ମନ୍ତ୍ରୀ ତାଙ୍କ ସହ ପୁରୀ ଆସିଲେ ।

ରଥଯାତ୍ରା ଦିନ ପୁରୁଷୋତ୍ତମ ଦେବ ଅତିଥି ମନ୍ତ୍ରୀଙ୍କ ସହ ବସି ଗପସପ ହେଉଛନ୍ତି, ଛେରା ପହଁରା ସମୟ ହୋଇଗଲା । ସ୍ୱୟଂ ମହାରାଜା ଯାଇ ସୁବର୍ଣ୍ଣ ଝାଡୁଧରେ ରଥ ପରିଷ୍କାର କରିବା କଥା । ସେ ମହାପ୍ରଭୁଙ୍କ ସେବକ, ଏ ପରମ୍ପରା ଦ୍ୱାରା ଏହାହିଁ ପ୍ରମାଣିତ ହେଉଥିଲା ।

ଏହାପରେ କାଞ୍ଚି ମନ୍ତ୍ରୀ ମହୋଦୟ ବଡ଼ ଗମ୍ଭୀର ଦେଖାଗଲେ । ନିଜ ରାଜ୍ୟକୁ ଫେରି ସେ କାଞ୍ଚି ରାଜାଙ୍କୁ କହିଲେ, " ମହାରାଜ, ଆମ ରାଜକନ୍ୟା କ'ଣ ଜଣେ ଝାଡୁଦାରକୁ ବାହା ହେବେ ? ଆମ ରାଜ୍ୟର ଲୋକେ କହିବେ କ'ଣ ? "

"ଝାଡ଼ୁଦାର ମାନେ ? ମନ୍ତ୍ରୀବର, ତମେ କହୁଛ କ'ଣ ? ତମକୁ ପରା ଉତ୍କଳର ମହାରାଜା ପୁରୁଷୋତ୍ତମ ଦେବଙ୍କ ସହ ଆମ କନ୍ୟା ପଦ୍ମାବତୀଙ୍କ ବିବାହ ପ୍ରସ୍ତାବ ପକକା କରି ଦିନ ତାରିଖ ନିରୂପଣ କରିବାର ଦାୟିତ୍ୱ ଦିଆଯାଇଥିଲା, ଝାଡ଼ୁଦାର ପ୍ରସଙ୍ଗ ଆଣିଲ କେଉଁଠାରୁ ?" କାଞ୍ଚି ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

ଉତ୍କଳର ରାଜା କିପରି ହଜାର ହଜାର ନରନାରୀଙ୍କ ଆଗରେ ଝାଡ଼ୁ ଧରି କାମ କରନ୍ତି, ମନ୍ତ୍ରୀ ସେକଥା ବର୍ଣ୍ଣନା କଲେ ।

କାଞ୍ଚି ରାଜା ଉତ୍କଳ ରାଜାଙ୍କ କାର୍ଯ୍ୟର ମହତ୍ତ୍ୱ ନ ବୁଝି ବିବାହ ପ୍ରସ୍ତାବ ପ୍ରତ୍ୟାହାର କରିନେଲେ । ଉତ୍ତେଜିତ ହେଲେ ମହାରାଜା ପୁରୁଷୋତ୍ତମ ଦେବ । ସୈନ୍ୟବାହିନୀ ଧରି ସେ କାଞ୍ଚି ବିଜୟରେ ବାହାରିଲେ । ପ୍ରଥମ ଥର ପରାସ୍ତ ହେଲେ । କିନ୍ତୁ ଶ୍ରୀଜଗନ୍ନାଥଙ୍କୁ ଆରାଧନା କରି ଦ୍ୱିତୀୟ ଅଭିଯାନରେ ଆସି ସେ ବିଜୟୀ ହେଲେ । ରାଜକନ୍ୟାଙ୍କୁ ସେ ପୁରୀ ନେଇ ଆସିଲେ ।

କିନ୍ତୁ ଇଏ କ'ଣ ? ତାଙ୍କୁ ବିଭା ନ ହୋଇ ସେ ମନ୍ତ୍ରୀଙ୍କୁ କହିଲେ, "ଜଣେ ଝାଡ଼ୁଦାର ସହ ପଦ୍ମାବତୀଙ୍କ ବିବାହ କରାଇ ଦିଅ ।"

"ଯେ ଆଜ୍ଞା, ମହାରାଜ !" କହିଲେ ମନ୍ତ୍ରୀବର ଓ ରାଜକନ୍ୟାଙ୍କ ବିବାହ ଦାୟିତ୍ୱ ସେ ଗ୍ରହଣ କରି ନେଲେ ।

ଯଥା ସମୟରେ ପୁଣି ରଥଯାତ୍ରା ସମୟ ଆସିଲା । ମହାରାଜା ସୁବର୍ଣ୍ଣ ଝାଡ଼ୁ ଧରି ରଥ ଉପରକୁ ଉଠିବାକୁ ଉଦ୍ୟତ ହେଲେ । ହଠାତ୍ ସେତିକିବେଳେ ମନ୍ତ୍ରୀ ପଦ୍ମାବତୀଙ୍କୁ ଧରି ତାଙ୍କ ଆଗକୁ ଆସି କହିଲେ, "ମହାରାଜ ! ଆପଣଙ୍କ ନିର୍ଦ୍ଦେଶହିଁ କାର୍ଯ୍ୟକାରୀ କରିବାକୁ ଯାଉଛୁ । ଆପଣଙ୍କଠୁଁ ବଳି ଯୋଗ୍ୟ ଝାଡ଼ୁଦାର ଏ ରାଜକନ୍ୟାଙ୍କ ପାଇଁ ମୁଁ କୁଆଡୁ ପାଇବି ?" ବିଜ୍ଞ ଓ ଚତୁର ମନ୍ତ୍ରୀଙ୍କ ଇଙ୍ଗିତରେ ପଦ୍ମାବତୀ ମହାରାଜାଙ୍କ କଣ୍ଠରେ ମାଲ୍ୟ ପ୍ରଦାନ କଲେ । ଏହା ପରେ ଯଥାରୀତି ଅନୁଷ୍ଠାନକ ବିବାହ ସମ୍ପାଦନ ହେଲା ।





ପ୍ରାଚୀନ ସାହିତ୍ୟର କାହାଣୀ

# ଶକୁନ୍ତଳା—୩

ପୂର୍ବ କଥା : ରାଜା ଦୁଷ୍ମନ୍ତ ଥରେ କଣ୍ୱ ମୁନିଙ୍କ ଆଶ୍ରମରେ ଅତିଥି ହୋଇ ମୁନିଙ୍କ ପାଳିତା କନ୍ୟା ଶକୁନ୍ତଳାଙ୍କୁ ବିଭା ହେଲେ । କିନ୍ତୁ ଅଭିଶାପ ଯୋଗୁଁ ସେ ତାହା ଭୁଲିଗଲେ । ଶକୁନ୍ତଳା ବଣ ଭିତରେ ପୁତ୍ର ଭରତକୁ ନେଇ ରହିଥାନ୍ତି ।

କେତେବର୍ଷ ବିତିଗଲା । ଦିନେ ଜଣେ ଧୀବର ନଈରେ ଦୀର୍ଘ ସମୟ ପର୍ଯ୍ୟନ୍ତ ଜାଲ ପକାଇ କିଛି ଧରି ପାରିଲା ନାହିଁ । ଶେଷକୁ କିନ୍ତୁ ତା' ଜାଲରେ ପଡ଼ିଲା ଗୋଟାଏ ବିରାଟ ମାଛ । ଆନନ୍ଦରେ ସେ ତାହା ଧରି ଘରକୁ ଫେରିଲା ।





ଘରେ ତା' ସ୍ତ୍ରୀ ମାଛକୁ କାଟିବା ମାତ୍ରେ ତା' ଭିତରୁ ଖସି ପଡ଼ିଲା ଗୋଟିଏ ଉଜ୍ଜ୍ୱଳ ମୁଦ୍ରିକା । ଦୁହିଙ୍କ ବିସ୍ମୟ କହିଲେ ନସରେ । ମୁଦ୍ରିକା ବିକ୍ରି କଲେ ବହୁତ ଅର୍ଥ ମିଳିବ । ସେମାନେ ଧନୀ ହୋଇଯିବେ ।



ଧୀବର ମୁଦିଟି ଧରି ଜଣେ ବଣିଆ ପାଖରେ ପହଞ୍ଚିଲା । ବଣିଆ ସେଭଳି ମୂଲ୍ୟବାନ ମୁଦି ଜୀବନରେ ଦେଖି ନଥିଲା । ଧୀବର ତାହା ମାଛ ପେଟରୁ ପାଇଛି, ଏକଥାରେ ସେ ପଇତେ ଗଲା ନାହିଁ । ଟୋକା ନିଶ୍ଚେ ଚୋରି କରିଥିବ ଭାବି ବଣିଆ ତାକୁ ରାଜାଙ୍କ ପାଖକୁ ନେଇଗଲା ।

ରାଜା ମୁଦିଟି ହାତକୁ ନେଇ ବିସ୍ମିତ ହୋଇ ତାକୁ ଦେଖୁଥାନ୍ତି । ଅମାତ୍ୟ-ମାନେ କହିଲେ, "ମହାରାଜ, ଏ ଧୀବର ନିଶ୍ଚୟ କୌଣସି ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଘରୁ ଏ ମୁଦ୍ରିକା ଚୋରି କରିଛି !" କିନ୍ତୁ ଧୀବର ଯୋର ଦେଇ କହୁଥାଏ କି ସେ ତାହା ମାଛ ପେଟରୁ ପାଇଛି !





ତେଣେ ମୁଦ୍ରିକା ଆଡେ ଅନାଇ ରାଜାଙ୍କ ସ୍ମୃତିରେ ଚହଟି ଉଠିଲା ଶକୁନ୍ତଳାଙ୍କ ମୁହଁ । ସେତେବେଳକୁ ଦୁର୍ବାସାଙ୍କ ଶାପ କଟିଗଲାଣି । ସେ ଶକୁନ୍ତଳାଙ୍କ ପ୍ରତି କେତେ ନିର୍ଦ୍ଦୟ ବ୍ୟବହାର କରିଛନ୍ତି, ତାହା ଭାବି ଅନୁତାପାନଳରେ ଦଗ୍ଧ ହେବାକୁ ଲଗିଲେ ।

କାହିଁଥିବେ ଶକୁନ୍ତଳା ? ରାଜାଙ୍କ ଦୂତମାନେ କଣ୍ୱ ମୁନିଙ୍କ ଆଶ୍ରମକୁ ଘୋଡ଼ା ଛୁଟାଇଲେ । କିନ୍ତୁ ଶକୁନ୍ତଳା ସେଠି ନଥିଲେ । ଉଦ୍‌ବିଗ୍ନ ରାଜା ଚାରି-ଆଡ଼େ ସନ୍ଧାନ ନେବାକୁ ଲାଗିଲେ । କିନ୍ତୁ କିଛି ଫଳ ହେଲା ନାହିଁ । ତାଙ୍କର ଉତ୍କଣ୍ଠା ବଢ଼ିବାହିଁ ସାର ହେଲା ।





ଦିନେ ରାଜା ଦୁଃଖିତ ହୋଇ ବଣରେ ବୁଲୁଛନ୍ତି, ହଠାତ୍ ଦେଖିଲେ ଗୋଟିଏ ଅବିଶ୍ୱସନୀୟ ଦୃଶ୍ୟ । ବାଳକଟିଏ କେତୋଟି ସିଂହ ଶାବକ ସହ ଖେଳୁଛି । ମା ସିଂହ ମଧ୍ୟ ବାଳକର ବୋଲ ମାନୁଛି । ରାଜା ଆଶ୍ଚର୍ଯ୍ୟ ହେଲେ ।

ସେ ଅଶ୍ୱରୁ ଅବତରଣ କରି ବାଳକ ପାଖକୁ ଗଲେ ଓ ତା' ସହ କଥାବାର୍ତ୍ତା କଲେ । ବାଳକର ସାହସ ଓ ସରଳତା ତାଙ୍କୁ ମୁଗଧ କଲା । ବାଳକ ରାଜାଙ୍କ ହାତ ଧରି ତା' କୁଡ଼ିଆ ଆଡ଼େ ନେଇଗଲା । ରାଜା କୌତୂହଳୀ ହୋଇ ଚାଲିଲେ ।





# ପଣ୍ଡିତଙ୍କ ପୁଞ୍ଜି

ଅନେକଦିନ ତଳର କଥା । ହରିପୁର ଗାଁରେ ସୀତାରାମ ମିଶ୍ର ନାମକ ପଣ୍ଡିତ ଥିଲେ । ସେ ଅନେକ ପିଲାଙ୍କୁ ପାଠ ପଢ଼ାଉଥିଲେ । ସେମାନେ ଦେଉଥିବା ଦକ୍ଷିଣା ଓ ଭେଟି ସେ ସଞ୍ଚୟ କରି ରଖୁଥିଲେ । ଥରେ ଅଧେ ରାଜ-ଦରବାରରୁ ବି ସେ ପୁରସ୍କାର ପାଉଥିଲେ । ସମୁଦାୟ ପାଞ୍ଚଶହ ଯାଏ ରୂପାଟଙ୍କା ସେ ଜମାଇ ପାରିଥିଲେ । ସେ ଯୁଗରେ ତାହା ବହୁତ ବୋଲି କହିବାକୁ ହେବ ।

ଥରେ କାଶୀରେ ଗୋଟିଏ ପଣ୍ଡିତ ସମ୍ମିଳନୀ ହେଉଥାଏ । ସେଥିରେ ଯୋଗଦେବା ନିମନ୍ତେ ସୀତାରାମ ମିଶ୍ରଙ୍କ ପାଖକୁ ନିମନ୍ତ୍ରଣ ଆସିଲା । ସେ ଏଭଳି ସମ୍ମାନ ପାଇ ଖୁସି ହେଲେ । କିନ୍ତୁ ସମସ୍ୟା ଦେଖାଦେଲା ତାଙ୍କ ଟଙ୍କା ଥଳିକୁ ନେଇ । କାଶୀକୁ ଯାଇ, ସମ୍ମିଳନୀରେ ଯୋଗଦେଇ ଫେରି ଆସିବା ବେଳକୁ ଏକମାସରୁ ଅଧିକ ସମୟ ଲାଗିବ । ସେତେକ ଦିନ ଟଙ୍କା ଥଳି ଜଗିବ କିଏ ? ତାଙ୍କ ସ୍ତ୍ରୀ ନିହାତି ସରଳ ଲୋକ । ତାଙ୍କୁ କେହି ଠକିଦେଇ ଟଙ୍କାତକ ମାରିନେବା ବିଚିତ୍ର ନୁହେଁ । ତେଣୁ ତାଙ୍କ ଜମା ଟଙ୍କା ଛାଡ଼ିଯିବା ଠିକ୍ ହେବ ନାହିଁ । ଅନେକ ଭାବିଚିନ୍ତି ସେ ଗାଁର ଧନୀ ଦୋକାନୀ ମଠୁ ମହାପାତ୍ର ପାଖରେ ହାଜର ହେଲେ ଓ ତାଙ୍କୁ ତାଙ୍କ ସମସ୍ୟା କଥା କହିଲେ । ମଠୁ ମହାପାତ୍ର କହିଲେ, "ଆରେ ବାପ୍ ! ଟଙ୍କା ପଇସା ବିଷୟରେ କାହାକୁ ବିଶ୍ୱାସ କରିବେ ନାହିଁ । ସିଏ ଆଜ୍ଞା ଏମିତି ଗୋଟାଏ ଚିଜ, ତାହା ପ୍ରଭାବରେ ସାଧୁ ବି ଖଣ୍ଟ ବନିଯିବ ।"

ମଠୁ ମହାପାତ୍ରେ ଏକଥା କହୁଥିଲା ବେଳେ ଜଣେ ସ୍ତ୍ରୀ ଲୋକ ତାଙ୍କ ସହକାରୀଠୁଁ ସେରେ ଗୁଡ଼ କିଣି ନେଇଗଲେ ।

ହଠାତ୍ ମଠୁ ମହାପାତ୍ରେ ସହକାରୀକୁ ଧମକ ଦେଇ ପଚାରିଲେ, "ହଇରେ ଟୋକା, ସେ

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ସ୍ତ୍ରୀ ଲୋକଠୁଁ ପାହୁଲାଏ ଅଧିକା ରଖିଲୁ କାହିଁକି ? ମୁଁ ତୋତେ କହୁଛି, ସେରେ ଗୁଡ଼ରେ ମୋର ମାତ୍ର ଗୋଟାଏ ପଇସା ଲାଭ ଲୋଡ଼ା । ତୁ ଅଧିକା ପାହୁଲାଟାଏ କାହିଁକି ରଖିଲୁ ? ସେତକ ଲାଭ ସିନା ଘିଅରେ ରହେ ! ଘିଅ ଯେଉଁମାନେ କିଣନ୍ତି, ସେମାନେ ଥିଲାବାଲା ଲୋକ । ସେ ସ୍ତ୍ରୀଲୋକ ପୁଣି କେବେ କିଛି କିଣିବାକୁ ଆସିଲେ ତାଙ୍କଠୁଁ ପାହୁଲାଏ କମ୍ ନେବୁ ।"

ପଣ୍ଡିତେ ମୁଗ୍ଧ ହେଲେ ଓ ଭାବିଲେ ଏଭଳି ସତ୍ ଲୋକ ପାଖରେହିଁ ଟଙ୍କା ରଖିବା ନିରାପଦ ।

"ମଠୁ! ତମେ ମୋ ଟଙ୍କା ଥଳିଟି ରଖ ।" ସେ ନିବେଦନ କଲେ ।

"ରାମ, ରାମ! ଆପଣ ଯଦି ନିହାତି କହୁଛନ୍ତି, ତେବେ ମୋ ଦୋକାନ ଭିତରେ ଯେଉଁଠି ଇଚ୍ଛା ଆପଣ ନିଜେ ତାହା ଲୁଚାଇ ରଖିଦେଇ ଯାଆନ୍ତୁ । ଆପଣ ରଖିବେ, ଆପଣ ନେବେ । ମୋ'ର କିଛି କହିବାର ନାହିଁ ।"

ପଣ୍ଡିତେ ଟଙ୍କା ଥଳି ଠାଏଁ ଲୁଚାଇ ଦେଇ ଗଲେ ।

ଦେଡ଼ମାସ ପରେ ସେ ଫେରି ଆସିଲେ ଓ ମଠୁ ମହାପାତ୍ରର ଦୋକାନରେ ପହଞ୍ଚିଲେ । "ଆସନ୍ତୁ, ଆସନ୍ତୁ ପଣ୍ଡିତେ । ସମ୍ମିଳନୀ ଭଲ ହେଲା ତ ?" ମଠୁ ପଚାରିଲା ।

"ହିଁ, ମଠୁ । ଭଲ ହେଲା । ମୋ ବକ୍ତୃତାରେ ସମସ୍ତେ ଖୁସି ହେଲେ ।" ପଣ୍ଡିତେ କହିଲେ ।

"ବାଃ, ବାଃ, ଆପଣ ତ ଆମ ଗାଁର ଗୌରବ । ଆଉ କିଛି କହିବେ ?" ମଠୁ ପଚାରିଲା ।

"ନା ଭାଇ, କହିବି ଆଉ କ'ଣ, ମୋ ଟଙ୍କା ଥଳିଟି ନେଇଯିବି ।"

"ନିଶ୍ଚୟ । ଯେଉଁଠି ରଖିଥିଲେ ନିଜେ ନେଇଯା'ନ୍ତୁ ।" ମଠୁ କହିଲା ।

ପଣ୍ଡିତେ ଯାଇ ଖୋଜିଲେ । କିନ୍ତୁ ଥଳି ପାଇଲେ ନାହିଁ ।

"କଥା କ'ଣ ମଠୁ ? ଥଳି ତ ନାହିଁ !" ସେ ଆଶଙ୍କା ପ୍ରକାଶ କଲେ ।

"ନାହିଁ ମାନେ ନାହିଁ! ମୁଁ ତ କହିଥିଲି, ଆପଣ ରଖିବେ, ଆପଣ ନେବେ । ମୋର କିଛି ଦାୟିତ୍ୱ ନାହିଁ ।" ମଠୁ ରୁକ୍ଷ ଭାବରେ କହିଦେଲା ।

ପଣ୍ଡିତେ ସ୍ତବ୍ଧ ହୋଇ ରହିଲେ । ସେ ବୁଝିଲେ, ମଠୁ ତାଙ୍କୁ ଦଗାଦେଲା ।

ପଣ୍ଡିତେ ମୁହଁ ଶୁଖାଇ ବାଟ ଚାଲୁଛନ୍ତି, ଜଣେ ବୁଢ଼ୀ ସହ ଦେଖାହେଲା । ସେ ବୁଢ଼ୀର ଘର ଭିନ୍ନ ଗାଁରେ । ପଣ୍ଡିତେ ତାକୁ ଚିହ୍ନିଥିଲେ । ସେ ପଣ୍ଡିତଙ୍କୁ ଦେଖି ତାଙ୍କ ଭଲମନ୍ଦ ପଚାରନ୍ତେ ପଣ୍ଡିତେ ତାକୁ ନିଜ ଦୁଃଖ କଥା କହିଲେ । ବୁଢ଼ୀ ସବୁ ଶୁଣି କହିଲା, "ପୁଅ ! ଚିନ୍ତା କରନା । ମୁଁ ତୋ ଟଙ୍କା ଆଦାୟ କରିଦେବି ।" ବୁଢ଼ୀ ନିଜ ଘରକୁ ଯାଇ ପୁଳାଏ ଅଳଙ୍କାର ଧରି ଆସିଲା ଓ ପଣ୍ଡିତଙ୍କୁ ନିଜ ଯୋଜନା ବତାଇ ଦେଲା ।

ଗହଣାତକ ଧରି ବୁଢ଼ୀ ମଠୁ ମହାପାତ୍ରର ଦୋକାନରେ ପହଞ୍ଚିଲା । "ଆରେ ପୁଅ ! ମୁଁ କିଛିଦିନ ପାଇଁ କଲ୍ୟାଣପୁର ଯିବି । ତୋତେ ମୋର ଏ ଅଳଙ୍କାରତକ ରଖିବାକୁ ହେବ ।" ସେ କହିଲା ।

"ମୋତେ ରଖିବାକୁ କହୁଛ କାହିଁକି ?" ମଠୁ ପଚାରିଲା ।

"ପୁଅ, ମୁଁ ଦୁନିଆରେ ଗୋଟାଏ ଲୋକକୁ ପୁରା ବିଶ୍ୱାସ କରେଁ । ସିଏ ହେଲା ସୀତାରାମ ମିଶ୍ର । ସିଏ କାଶୀ ଯାଇଛି ତୋଠି ଟଙ୍କା ରଖି । ସେ ମୋତେ କହିଥିଲା କି ମାଉସୀ, ଗାଁରେ ଜଣେ ସାଧୁ ଲୋକ ଅଛନ୍ତି, ମଠୁ ମହାପାତ୍ରେ । ଗରାଖଠୁଁ



ପାହୁଲଟାଏ ବେଶି ଲଭ ନେବେ ନାହିଁ । ସେଥିପାଇଁ ମୁଁ ତୋ ପାଖକୁ ଆସିଲି । ତୁ ତ ଜାଣୁ, ମୋ ନାତି କାଶୀଠୁଁ ଦୂରରେ କଲ୍ୟାଣ-ପୁରରେ ଚାକିରି କରୁଛି । ଆଜିକୁ ଛଅମାସ ହେବ ତା'ଠୁଁ କିଛି ଖବର ପାଇନାହିଁ । ତେଣୁ ଥରେ ଯାଇ ବୁଲି ଆସିବି । ମୋର ଏ ସମ୍ପତ୍ତି ଛାଡ଼ିଯିବି କାହା ପାଖରେ ? ତୁ ନ ରଖିଲେ ଚଳିବ ?" ବୁଢ଼ୀ କହିଲା ।

ସେ ଅଳଙ୍କାରତକ ଆଡ଼େ ଅନାଇ ମଠୁ ବୁଝିଲା, ତା'ର ମୂଲ୍ୟ ପାଞ୍ଚହଜାରକୁ କମ୍ ନୁହେଁ । ସେଥିରେ ହୀରା ଲାଗିଥିବା ହାର ବି ଥିଲା ।

ସେତିକିବେଳେ ଦେଖାଗଲା ପଣ୍ଡିତ ସୀତା-ରାମ ମିଶ୍ର ପୁଣି ଆସୁଛନ୍ତି । ମଠୁ ମୁହଁ କଳା ପଡ଼ିଗଲା । ପଣ୍ଡିତ କାଶୀରୁ ଫେରିଥିବା କଥା ବୁଢ଼ୀ ଜାଣି ନଥିଲା । ବର୍ତ୍ତମାନ ଯଦି ପଣ୍ଡିତ ତାଙ୍କ ଟଙ୍କା ନ ପାଇବା ବ୍ୟାପାରରେ ପାଟିଗୋଳ କରିବେ, ତେବେ ଏ ପାଞ୍ଚହଜାର ଟଙ୍କା ମୂଲ୍ୟର ସମ୍ପତ୍ତି ହାତ ଛଡ଼ା ହୋଇଯିବ ।

ମଠୁ ହଠାତ୍ ପାଟି କରି କହିଲା, "ଆସନ୍ତୁ ପଣ୍ଡିତେ ! ଆପଣଙ୍କ ଭଳି ଭୋଳା ମଣିଷ ମୁଁ ଆଉ ଦେଖିନାହିଁ । ଆପଣ ଆପଣଙ୍କ ଟଙ୍କା ଥଳି ରଖିଥିଲେ କେଉଁଠି, ଆଉ ଖୋଜୁଥିଲେ କେଉଁଠି ? ଛିଃ, ଛିଃ । ମୋ ଦୋକାନରୁ ଚୋରି କରିବ କିଏ ? ଦେଖିବା ବେଳକୁ ଆପଣଙ୍କ ଥଳି ସେମିତି ଥୁଆ ହୋଇଛି, ଯେଉଁଠି ରଖିଥିଲେ ବୋଲି ଭାବୁଥିଲେ, ତାହାଠୁଁ ଟିକିଏ ଦୂରରେ ।"

ପଣ୍ଡିତେ ଟଙ୍କା ଥଳି ନେଇ ତା'ପରେ ବୁଢ଼ୀ ଆଡ଼େ ଅନାଇ କହିଲେ, "ମାଉସୀ, ତମ ନାତି ସହ ଭେଟ ହୋଇଗଲା କାଶୀରେ । ସେ ଆଗାମୀ ମାସ ଆସିବ । ସେ ଭଲ ଅଛି ।"

"ପୁଅ, ତୁ ମୋତେ ବହୁତ ଅଡୁଆରୁ ରକ୍ଷା କରିଦେଲୁ । ମୁଁ ମଠୁ ଜିମା ମୋ ସମ୍ପତ୍ତି ଦେଇ ନିଜେ କଲ୍ୟାଣପୁର ଯିବାକୁ ବାହାରିଥିଲି ।" ଏହା କହି ବୁଢ଼ି ମଠୁକୁ "ଯାଉଛିରେ ପୁଅ !" କହି ତା' ଜିନିଷ ଫେରାଇନେଇ ଚାଲିଗଲା ? ପଣ୍ଡିତେ ବି ତାଙ୍କ ଥଳି ଧରି ଘରକୁ ଫେରିଲେ ।






ଗୋକୁଳର ଅଧିବାସୀମାନଙ୍କ ଆଗରେ ଯେତେ ପ୍ରକାର ସମସ୍ୟା ଦେଖାଦେଉଥାଏ, ଶ୍ରୀକୃଷ୍ଣଙ୍କ ହସ୍ତକ୍ଷେପ ଫଳରେ ସେସବୁର ସମାଧାନ ହୋଇଯାଇଥାଏ । ଲୋକେ ସୁଖ ଶାନ୍ତିରେ ଥା'ନ୍ତି । ଗୋକୁଳର ଅବସ୍ଥିତି ଅତ୍ୟନ୍ତ ମନୋରମ ଅଞ୍ଚଳରେ । ଅଦୂରରେ ଗୋବର୍ଦ୍ଧନ ପର୍ବତ । ଅଙ୍କା ବଙ୍କା କୁଳୁକୁଳୁ ନାଦିନୀ ଯମୁନା ସର୍ବଦା ଗୋକୁଳର ବାତାବରଣକୁ ଶୀତଳ କରି ରଖିଥାଏ । ଚତୁର୍ଦ୍ଦିଗରେ ବନଲତା ସେ ଅଞ୍ଚଳକୁ ଶାନ୍ତିପୂର୍ଣ୍ଣ କରି ରଖିଥାନ୍ତି । ଗୋକୁଳର ଅଧିବାସୀମାନେ ସେମାନଙ୍କ ଗୋଧନ ଉପରେ ବିଶେଷ ଗୁରୁତ୍ୱ ଦେଉଥାନ୍ତି । ଗୋରୁଗାଈମାନଙ୍କର ବିଶେଷ ଯତ୍ନ ନେଉଥାନ୍ତି । ଗାଈମାନେ ବି ସେମାନଙ୍କୁ ଦୁଗ୍ଧଦାନ ଦେଇ ହୃଷ୍ଟପୁଷ୍ଟ କରି ରଖିଥାନ୍ତି ।

ତେବେ ସେତେବେଳେ ଲୋକେ ନାନା ପ୍ରକାର ଦେବତା ଉପଦେବତାମାନଙ୍କୁ ପୂଜା ଆରାଧନା କରୁଥାନ୍ତି । ଖାଲି ଭିନ୍ନ ଭିନ୍ନ ଫଳ ଲାଭ ଆଶାରେ ସେମାନେ ସେସବୁ ପୂଜା ଆରାଧନା କରୁଥାନ୍ତି । ସେଥିରେ ନା ଥାଏ ଭକ୍ତି, ନା ଥାଏ ସତ୍ୟକୁ ଉପଲବ୍ଧି କରିବା ଦିଗରେ ଆଗ୍ରହ । ଶ୍ରୀକୃଷ୍ଣ ଦେଖିଲେ, ଏହା ଦ୍ୱାରା ମାନବ ଜୀବନରେ କୌଣସି ପ୍ରଗତି ହେଉ ନାହିଁ । ଯେଉଁ ଆଶା ଆକାଂକ୍ଷା, ସନ୍ତୋଷ ଅସନ୍ତୋଷ ଭିତରେ ମଣିଷ ମାୟାବଦ୍ଧ ହୋଇ ରହିଥାଏ, ସେହିଥିରେ ଚିରକାଳ ରହିବାହିଁ ସାର ହେଉଛି ।

ଗୋକୁଳର ଲୋକେ ପ୍ରତି ବର୍ଷ ଅତି ଜାକଜମକରେ ଇନ୍ଦ୍ର ପୂଜା କରୁଥାନ୍ତି । ସେପାଇଁ ବହୁଦିନ ଧରି ବ୍ୟାପକ ପ୍ରସ୍ତୁତି ଚାଲିଥାଏ । ସେ

୮. ଗିରିଗୋବର୍ଦ୍ଧନ ଉତ୍ତୋଳନ




ସାଥୀମାନେ ତାଙ୍କୁ କହନ୍ତି । କିନ୍ତୁ ଶ୍ରୀକୃଷ୍ଣ ସେଥିରେ କୌଣସି ଆଗ୍ରହ ଦେଖାଇଲେ ନାହିଁ । ବାଳକମାନେ ଆଶ୍ଚର୍ଯ୍ୟ ହେଲେ ।

କ୍ରମେ ପୂଜା ସମୟ ନିକଟତର ହୋଇ ଆସୁଥାଏ । ଏଥର ଗୋକୁଳର ବଡ଼ ମଣିଷ-ମାନେ ମଧ୍ୟ ସେମାନଙ୍କ ଉତ୍ସବ ଉପଲକ୍ଷ୍ୟେ ଶ୍ରୀକୃଷ୍ଣଙ୍କ ସହଯୋଗ କାମନା କରି ତାଙ୍କୁ କହିଲେ ।

"ସେଭଳି ପୂଜାର ଆବଶ୍ୟକତା ନାହିଁ ।" ଶ୍ରୀକୃଷ୍ଣ କହିଲେ । ଲୋକେ କିଛି ବୁଝି-ପାରିଲେ ନାହିଁ ।

କୃଷ୍ଣ ଲୋକଙ୍କୁ ବୁଝାଇଲେ କି ଏଭଳି ପୂଜା ଅର୍ଚ୍ଚନାରେ ବାସ୍ତବିକ କିଛି ମୂଲ୍ୟ ନାହିଁ । ସମସ୍ତେ ସ୍ୱୟଂ ପରମେଶ୍ୱରଙ୍କ ପୂଜା କରିବା ଆବଶ୍ୟକ । ତାହା ଦ୍ୱାରା ପ୍ରତ୍ୟେକଙ୍କ ସହ ଭଗବାନଙ୍କର ସୂକ୍ଷ୍ମ ସମ୍ପର୍କ ଗଢି ଉଠିବ । ତାହାହିଁ ପ୍ରକୃତ ମୁକ୍ତିର ସୂତ୍ର । ଯଦି ସାମାଜିକ ସ୍ତରରେ ଉତ୍ସବ ଅନୁଷ୍ଠାନ କରିଆରେ କିଛି କରିବାକୁ ହେବ, ତେବେ ବରଂ ପ୍ରକୃତିର ପୂଜା କରିବା ଆବଶ୍ୟକ । ପ୍ରକୃତିମାତା ଆମକୁ କୋଳରେ ଧାରଣ କରି ରଖିଛି । ନଦୀ, ହ୍ରଦ କରିଆରେ ସେ ଆମର ତୃଷ୍ଣା ନିବାରଣ କରୁଛି । ଶସ୍ୟ ଓ ଫଳମୂଳ ଦେଇ ସେ ଆମର କ୍ଷୁଧା ମେଣ୍ଟାଉଛି । ସୁନ୍ଦର ପୁଷ୍ପ ସମ୍ଭାର ଦ୍ୱାରା ସେ ଆମକୁ ସୌନ୍ଦର୍ଯ୍ୟ କ'ଣ ତାହା ଶିଖାଇ ଦେଉଛି ।

ପୂଜାରେ ବାସ୍ତବିକ କୌଣସି ପବିତ୍ର ଭାବ ନଥାଏ । ଖାଲି ବାସନା ପୂରଣ ପାଇଁ ସେ ଉତ୍ସବ ।

ସେ ବର୍ଷ ମଧ୍ୟ ଆଗତ ପ୍ରାୟ ଉତ୍ସବ ନିମନ୍ତେ ପ୍ରସ୍ତୁତି ଆରମ୍ଭ ହୋଇଗଲା । ଲୋକେ କେତେ ପ୍ରକାର ମିଷ୍ଟାନ୍ନ ପ୍ରସ୍ତୁତ କରିବାରେ ଲାଗି ପଡ଼ିଲେ । ନାଚ ଗୀତର ବ୍ୟବସ୍ଥା ହେଲା । ଶ୍ରୀକୃଷ୍ଣ ସେସବୁ ଧ୍ୟାନ ଦେଇ ଦେଖୁଥାନ୍ତି, କିନ୍ତୁ ସେସବୁ ପ୍ରତି କୌଣସି ପ୍ରକାର ଆଗ୍ରହ ପ୍ରଦର୍ଶନ କରୁ ନଥାନ୍ତି ।

"କୃଷ୍ଣ ! ଇନ୍ଦ୍ର ପୂଜା ଉତ୍ସବ ଆସୁଛି । ସେତେବେଳେ ଆମ୍ଭେମାନେ ମଧ୍ୟ କିଛି ଆନନ୍ଦ ଉଲ୍ଲାସ କରିବା ଆବଶ୍ୟକ !" କୃଷ୍ଣଙ୍କ ଖେଳ-



ସେହି ପ୍ରକୃତିର ପ୍ରତିନିଧି ବା ପ୍ରତୀକ ହେଲେ ଗୋବର୍ଦ୍ଧନ ପର୍ବତ। ତେଣୁ ତାଙ୍କୁ ପୂଜା କରାଯାଉ। ସେହି ଉପଲକ୍ଷ୍ୟେ ଉତ୍ସବ ହେଉ।

ଗୋକୁଳର ଲୋକଙ୍କ ମନକୁ ଏକଥା ପାଇଲା। ସେମାନେ ଇନ୍ଦ୍ର ପୂଜା ବଦଳରେ ଗିରି ଗୋବର୍ଦ୍ଧନ ପୂଜା ନିମନ୍ତେ ପ୍ରସ୍ତୁତ ହେଲେ। ଶୁଭ ଦିନରେ ନରନାରୀମାନେ ନାନାଦି ପୂଜା ସାମଗ୍ରୀ ଧରି ପର୍ବତ ପାଖକୁ ଚଳିଲେ। ଉତ୍ସବ ଆରମ୍ଭ ହେଲା। ହଠାତ୍ ସମସ୍ତେ ଦେଖିଲେ, ପର୍ବତ ଉପରେ ସତେ ଅବା ପର୍ବତର ଆତ୍ମା ରୂପେ ଶ୍ରୀକୃଷ୍ଣ ଯାଇ ଠିଆ ହୋଇଛନ୍ତି। କିନ୍ତୁ ଶ୍ରୀକୃଷ୍ଣ ତ ସେମାନଙ୍କ ପାଖରେ ଥିଲେ, କେତେବେଳେ ଯାଇ ପର୍ବତ ଶୀଖରରେ ପହଞ୍ଚିଲେ ?

ଗୋକୁଳର ନରନାରୀଙ୍କ ଭିତରେ ଯେଉଁମାନେ ଅତ୍ୟନ୍ତ ଜ୍ଞାନୀ ଅଥବା ସଚ୍ଚା ଭକ୍ତ ଥିଲେ, ସେମାନେ ପୁଲକିତ ହେଲେ, କିନ୍ତୁ ବିସ୍ମିତ ହେଲେ ନାହିଁ। ସେମାନେ ବୁଝିଲେ ଯେ ଶ୍ରୀକୃଷ୍ଣ ଆଉ କେହି ନୁହନ୍ତି, ସ୍ୱୟଂ ବିଷ୍ଣୁଙ୍କର ଅବତାର। ବିଷ୍ଣୁ ସର୍ବତ୍ର ବିଦ୍ୟମାନ। ପର୍ବତ ଭିତରେ ମଧ୍ୟ। ଆଜି ଗୋକୁଳର ଲୋକେ ନିରାସକ୍ତ ଭାବରେ, କୌଣସି ବାସନା କାମନା ବିନା ଗିରି ଗୋବର୍ଦ୍ଧନକୁ ପୂଜା କରୁଥିବା ଯୋଗୁଁ ସେ ପୂଜା ବିଷ୍ଣୁ ଗ୍ରହଣ କରୁଛନ୍ତି। ଶ୍ରୀକୃଷ୍ଣ ହଠାତ୍ ପର୍ବତ ଶୀଖରରେ ଆବିର୍ଭୂତ ହେବାର ତାହାହିଁ ତାତ୍ପର୍ଯ୍ୟ।

ବିପୁଳ ଆନନ୍ଦ ଉଲ୍ଲାସ ଭିତରେ ପୂଜା ଠିକ୍ ଶେଷ ହେବାକୁ ଯାଉଛି, ଆକାଶ ମେଘାଚ୍ଛନ୍ନ ହୋଇ ଆସିଲା। ଟିକିଏ ଆଗରୁ ଆକାଶରେ ଖଣ୍ଡିଏ ମଧ୍ୟ ମେଘ ନଥିଲା। ହଠାତ୍ ଦେଖିବା ବେଳକୁ କଳା ହାଣ୍ଡିଆ ମେଘ ଚତୁର୍ଦ୍ଦିଗ ଘୁରି ଆସିଲେଣି।

"ଆରେ, ଆରେ, ଇଏ କ'ଣ, ହଠାତ୍ ମେଘ କେଉଁଠାରୁ ଆସିଲା ?" କେହି କେହି ବିସ୍ମିତ ହୋଇ ପ୍ରଶ୍ନ କଲେ।

"ଏହା ଅକାଳ ମେଘ। କୁଆଡୁ ଭାସି ଆସିଛି, ପୁଣି କୁଆଡେ ହଜିଯିବ। ଚିନ୍ତା କରିବାର କିଛି ନାହିଁ।" ଆଉ କେହି କେହି କହିଲେ।



କିନ୍ତୁ ମେଘମାଳା କ୍ରମେ ଗାଢ଼ତର ହେବାର ଦେଖାଗଲା । ସର୍ବତ୍ର ସ୍ତବ୍ଧତା ବିରାଜମାନ କଲା । ପକ୍ଷୀମାନେ ବ୍ୟାକୁଳ ଭାବରେ ଇତସ୍ତତଃ ଉଡ଼ି ବୁଲୁଥାନ୍ତି । ଲୋକେ ସେ ଦୃଶ୍ୟ ଦେଖି ଆତଙ୍କିତ ହେଲେ । ସମସ୍ତେ ପରସ୍ପର ଅନାଉଥାନ୍ତି ।

ଗୁଡ଼ୁଁ ଗୁଡ଼ୁଁ ବିଜୁଳି ଝଟକିଲା । ପରେ ପରେ ଏପରି ପ୍ରଚଣ୍ଡ ଶବ୍ଦରେ ବଜ୍ରପାତ ହେବାକୁ ଲାଗିଲା ଯେ, ବଜ୍ରପାତର ସେଭଳି ଭୟଙ୍କର ରୂପ ଲୋକେ କେବେ ଦେଖି ନଥିଲେ କି ଶୁଣି ନଥିଲେ । ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ତାହା ପ୍ରକୃତରେ ବର୍ଷାକାଳ ନୁହେଁ ! ଏପରି ଭାବରେ କାହିଁ କିପରି ଅକାଳ ମେଘର ଆବର୍ତ୍ତ ହେଲା, ସେକଥା କେହି ବୁଝି ପାରିଲେ ନାହିଁ ।

ପ୍ରଥମେ ଚତୁର୍ଦ୍ଦିଗ ବାୟୁଶୂନ୍ୟ ହୋଇଯିବା ଭଳି ମନେ ହୋଇଥିଲା । କିନ୍ତୁ ସେ ଅବସ୍ଥା କଟିଗଲା ଓ ପବନ ବହମାନ ହେବାକୁ ଲାଗିଲା । ସେ ପବନ କିନ୍ତୁ ବଡ଼ ଅସ୍ୱାଭାବିକ ମନେ ହେଉଥାଏ । ଗଛ ଲତାମାନେ ସେ ପବନରେ ସତେ ଅବା ଆର୍ତ୍ତନାଦ କରୁଥାନ୍ତି !

କ୍ରମେ ପବନର ଗତି ତୀବ୍ର ହେବାକୁ ଲାଗିଲା । ମୁହୂର୍ତ୍ତକ ଭିତରେ ତାହା ଏତେ ତୀବ୍ର ହେଲା ଯେ ଗୋଟାଏ ପରେ ଗୋଟାଏ ଗଛ କଚଡ଼ି ପଡ଼ିଲେ । ଲୋକେ ସ୍ତମ୍ଭୀଭୂତ ହୋଇ ଅନାଇ ରହିଥାନ୍ତି । ପବନ ସାଙ୍ଗକୁ ବର୍ଷା ଆରମ୍ଭ ହେଲା । ପ୍ରଥମେ ଧୂଳି ଧୂଳି ବର୍ଷା ପଡ଼ି ମୁହୂର୍ତ୍ତକ ଭିତରେ ତାହା ବଡ଼ ବଡ଼ ଜଳ କଣାରେ ପରିଣତ ହେଲା । ତା'ପରେ ହେଲା ମୂଷଳଧାରରେ ବର୍ଷା । ଯାହାଥିଲା ରାସ୍ତା, ତାହା ଜଳ ସ୍ରୋତରେ ପରିଣତ ହେଲା ।

ଏକ ପଟରେ ପ୍ରଚଣ୍ଡ ପବନ, ଅନ୍ୟ ପଟରେ ମୂଷଳଧାରାର ବର୍ଷା । ଏଥିରେ ଗିରିଗୋବର୍ଦ୍ଧନ ପାଖରେ ଠୁଳ ହୋଇଥିବା ନରନାରୀଙ୍କ ଅବସ୍ଥା କ'ଣ ହେବ, ସେକଥା ସହଜରେ ଅନୁମେୟ । ସେତେବେଳକୁ ଗୋଠରେ ଥିବା ଗୋରୁ ଗାଈମାନେ ମଧ୍ୟ ଆସି ମଣିଷଙ୍କ ସହ ମିଶିଯାଇଥାନ୍ତି । ସମସ୍ତେ ଭୟଭୀତ । ପ୍ରଥମେ ପ୍ରଥମେ ସମସ୍ତେ ଭାବିଥିଲେ, ଅଳ୍ପ ସମୟ ପରେ



ବର୍ଷା ଛାଡ଼ିଯିବ । କିନ୍ତୁ ଛାଡ଼ିବା ତ ଦୂରର କଥା, ବର୍ଷାର ବେଗ ଓ ମାତ୍ରା ଖୁବ୍ ବଢ଼ି ଚାଲିଲା ।

ବାସ୍ତବରେ ଇନ୍ଦ୍ରହିଁ ସେ ବର୍ଷା ଭିଆଇଥିଲେ । ଗୋକୁଳର ନରନାରୀମାନେ ହଠାତ୍ ତାଙ୍କ ପୂଜା ଆରାଧନା ବନ୍ଦ କରି ଗିରିଗୋବର୍ଦ୍ଧନକୁ ପୂଜିବାରୁ ସେ କୁପିତ ହୋଇ ମେଘ, ପବନ ଓ ବଜ୍ରର ଶକ୍ତିମାନଙ୍କୁ ଜଣକ ପରେ ଜଣଙ୍କୁ ଡାକି ଆଣି ଗୋକୁଳରେ ଓ ଗୋକୁଳର ଚତୁଃପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ କ'ଣ କରିବାକୁ ହେବ, ସେ ନିର୍ଦ୍ଦେଶ ଦେଇଥିଲେ । ତାଙ୍କ ଅନୁଚରମାନେ କାଳବିଳମ୍ବ ନକରି ଆକାଶ ମାର୍ଗରେ ଯାଇ ସେ ପ୍ରଳୟ ଲୀଳାର ସୃଜନ କରିଥିଲେ ।

ଅନେକେ ବୁଝିପାରିଲେ କି ଇନ୍ଦ୍ରଦେବ ପୂଜା ନ ପାଇ କ୍ରୋଧ ବଶରେ ଏଭଳି ପ୍ରଳୟଙ୍କର ବର୍ଷା ଆରମ୍ଭ କରିଛନ୍ତି । ଇନ୍ଦ୍ରଙ୍କ କ୍ରୋଧରୁ ସେମାନଙ୍କୁ କେଉଁ ମଣିଷ ବା ରକ୍ଷା କରିପାରିବ ? ସମସ୍ତେ ଆତଙ୍କିତ ହୋଇ ରହିଥାନ୍ତି । କେହି କାହାକୁ ପଦେ ଭରସା ଦେଇ କଥା କହିବା ଅବସ୍ଥାରେ ନଥାନ୍ତି ।

"ଚାଲ, ଇନ୍ଦ୍ରଙ୍କୁ ଆରାଧନା କରି ତୁଷ୍ଟ କରିବା ।" କେହି ଜଣେ ପ୍ରସ୍ତାବ ଦେଲେ ।

"ନା, ନା, ବର୍ତ୍ତମାନ ଆଉ ଇନ୍ଦ୍ର ଆମ ସ୍ତୁତିରେ ସନ୍ତୁଷ୍ଟ ହେଲାଭଳି ଅବସ୍ଥାରେ ନଥିବେ । ସେ ଭୀଷଣ ରାଗିଯାଇଛନ୍ତି ।" ଆଉ କେହି କେହି କହିଲେ ।

"ଯେଉଁ ଦେବତା ପୂଜା ନ ପାଇଲେ କୁପିତ ହୋଇ ଏଭଳି ବ୍ୟବହାର କରନ୍ତି, ସେଭଳି ଦେବତାଙ୍କ କୋପରେ ପଡ଼ି ଯାହା ହେବାର ହେଉପଛେ, ତାଙ୍କୁ ଆଉ ସ୍ତୁତି କରିବା ନାହିଁ ।" ଆଉ ଜଣେ କହିଲେ ।

"ତାହା ହେଲେ ଏ ସଙ୍କଟରୁ ମୁକ୍ତି ମିଳିବ କିପରି ?" ପ୍ରଶ୍ନ ହେଲା ।

ହଠାତ୍ ସେମାନଙ୍କ ଆଖି ଆଗରେ ଗୋଟିଏ ଅପୂର୍ବ, ଅଚିନ୍ତନୀୟ ଘଟଣା ଘଟିଲା । ଗିରିଗୋବର୍ଦ୍ଧନ ଶୂନ୍ୟକୁ ଉଠି ଯାଉଥିବାର ସେମାନେ ଦେଖିଲେ । ପ୍ରଥମେ ସେମାନେ ନିଜ ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ । ସେତିକିବେଳେ ସେମାନେ ଶୁଣିଲେ ଗୋଟିଏ କୋମଳ




କଣ୍ଠସ୍ୱର : "ସମସ୍ତେ ପର୍ବତ ତଳେ ଆସି ଆଶ୍ରା ନିଅନ୍ତୁ ।" ଆଶ୍ଚର୍ଯ୍ୟର କଥା, ସେ କଣ୍ଠସ୍ୱର କୋମଳ ହେଲେ ମଧ୍ୟ ବଜ୍ରଧ୍ୱନି ଓ ପବନର ପ୍ରଚଣ୍ଡ ଶବ୍ଦ ଅତିକ୍ରମ କରି ସେମାନଙ୍କୁ ଶୁଣାଗଲା ।

ସେମାନେ ବୁଝିଲେ, ତାହା ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶ । ତତ୍‌କ୍ଷଣାତ୍ ଗୋରୁ ଗାଈଙ୍କୁ ଧରି ସମସ୍ତେ ସେ ପର୍ବତ ତଳେ ଆଶ୍ରୟ ଗ୍ରହଣ କଲେ । ଦେଖାଗଲା, ଶ୍ରୀକୃଷ୍ଣ ନିଜ କନିଷ୍ଠ ଆଙ୍ଗୁଳିରେ ପର୍ବତକୁ ଟେକି ଧରିଛନ୍ତି ।

ସେ ଦୃଶ୍ୟ ଦେଖି ସେମାନଙ୍କ ବିସ୍ମୟର ସୀମା ରହିଲା ନାହିଁ । ସଙ୍ଗେ ସଙ୍ଗେ କୃତଜ୍ଞତାରେ ସେମାନଙ୍କ ମନ ଭରିଗଲା । ଯେଉଁ ବାଳକ ଏ ଅସମ୍ଭବ ସମ୍ଭବ କରିପାରେ, ସିଏ କିଏ, ଏକଥା ଯେଉଁମାନେ ବୁଝିନଥିଲେ, ସେମାନେ ମଧ୍ୟ ସେତେବେଳେ ବୁଝିଗଲେ ।

"ଆମେ ଜାଣୁଁ, ସଙ୍କଟ ଯେତେ ତୀବ୍ର ହେଉ ନା କାହିଁକି, ପରମ ଭଗବାନ ଯେପରି ହେଉ ଆମକୁ ରକ୍ଷା କରିବେ । ଆମେ ତାଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିବା ଆବଶ୍ୟକ । ତାଙ୍କ କରୁଣା ଉପରେ ଆମର ଆସ୍ଥା ଓ ବିଶ୍ୱାସ ଥିବା ଲୋଡ଼ା । ସବୁ ସମ୍ଭାବନା ତାଙ୍କ ଶକ୍ତି ଭିତରେ ରହିଛି । ଆମେ ଅଜ୍ଞାନ; ତେଣୁ ଏକଥା ବୁଝିବାର ଶକ୍ତି ଆମର ନାହିଁ ।" ଉତ୍ସାହରେ ଏକଥା କହିଲେ ଅନେକେ ।

ତେଣେ ଇନ୍ଦ୍ର ତାଙ୍କ ଆକ୍ରମଣ ଚଳାଇ ଯାଉଥାନ୍ତି । ସତେ ଅବା ଆକାଶଯାକ ତରଳି-ଯାଇ ଗୋକୁଳ ଉପରେ ଓଜାଡ଼ି ହୋଇ ପଡ଼ୁଥିଲା ।

ଦିନ ପରେ ଦିନ—ଏହିପରି ଭାବରେ ସାତ ଦିନ ବିତିଗଲା । ଇନ୍ଦ୍ର ଧୈର୍ଯ୍ୟ ହରାଇଲେ । କେହି ଜଣେ ଗିରିଗୋବର୍ଦ୍ଧନ ଟେକି ଧରି ଗୋକୁଳର ନରନାରୀଙ୍କୁ ରକ୍ଷା କରିବ, ଏ କଳ୍ପନା ସେ କରି ନଥିଲେ । ସେ ଧ୍ୟାନସ୍ଥ ହୋଇ ସେ ବ୍ୟକ୍ତି କିଏ, ସେ ପ୍ରଶ୍ନର ଉତ୍ତର ଖୋଜିଲେ । ତାଙ୍କୁ ଉତ୍ତର ମିଳିଗଲା । ସେ ବୁଝିଲେ ବିଷ୍ଣୁଙ୍କ ଅବତାର କୃଷ୍ଣହିଁ ସେ ଅସାଧ୍ୟ ସାଧନ କରିଛନ୍ତି ।

କୃଷ୍ଣଙ୍କ ବିପକ୍ଷରେ ଯିବାର ଅର୍ଥ ହୁଏନା । ତେଣୁ ଇନ୍ଦ୍ର ତାଙ୍କ ଶକ୍ତିମାନଙ୍କୁ ପ୍ରତ୍ୟାହାର କରି

ଆଣିଲେ । ସାତଦିନ ପରେ ବର୍ଷାର ପ୍ରକୋପ କମିବାକୁ ଆରମ୍ଭ କଲା । ପବନ ମଧ୍ୟ ଶିଥିଳ ହୋଇ ଆସିଲା । ବଜ୍ରଧ୍ୱନି ଆଉ ଶୁଣାଗଲା ନାହିଁ ।

କ୍ରମେ ଆକାଶ ନିର୍ମଳ ହୋଇ ଆସିଲା । ମେଘମାନେ ଅପସରି ଯିବାର ଦେଖାଗଲା । ଲୋକେ ସ୍ୱସ୍ତିର ନିଃଶ୍ୱାସ ଛାଡ଼ିଲେ ।

"ଆପଣମାନେ ଏଥର ଘରକୁ ଲେଉଟି ଯାଆନ୍ତୁ ।" ଶ୍ରୀକୃଷ୍ଣ କହିଲେ । ଲୋକେ ପର୍ବତ ତଳୁ ବାହାରି ନିଜ ନିଜ ଘରକୁ ଗଲେ । ଶ୍ରୀକୃଷ୍ଣ ଏଥର ପର୍ବତକୁ ଯଥାସ୍ଥାନରେ ଥୋଇଦେଲେ ।

ସେ ଚୁପ୍‌ଚାପ୍ ବସିଥାନ୍ତି, ସେଠାରେ ଆସି ରଥାରୂଢ଼ ଇନ୍ଦ୍ର ପହଞ୍ଚିଗଲେ । ରଥରୁ ଅବତରଣ କରି ସେ ଶ୍ରୀକୃଷ୍ଣଙ୍କ ନିକଟକୁ ଆସି କହିଲେ, "ପ୍ରଭୁ ! ନ ବୁଝି ନ ଜାଣି ମୁଁ ଯେଉଁ ଔଦ୍ଧତ୍ୟ କରିଛି, ସେପାଇଁ ମୋତେ ଆପଣ କ୍ଷମା କରନ୍ତୁ । ବାସ୍ତବିକ ଲୋକେ କାହାକୁ ପୂଜା କରିବେ ନ କରିବେ, ତାହା ସେମାନଙ୍କ ବିଚାର ବିବେଚନାର କଥା । ସେଥିରେ ମୁଁ କୁପିତ ହେବା ମୋର ଅହଙ୍କାର ଛଡ଼ା ଆଉ କିଛି ନୁହେଁ ।"

ଶ୍ରୀକୃଷ୍ଣ ପ୍ରଥମେ ଗମ୍ଭୀର ହୋଇ ରହିଥିଲେ । ତା'ପରେ ସେ ହସିଲେ । ଇନ୍ଦ୍ର ବୁଝିଲେ ଯେ ଶ୍ରୀକୃଷ୍ଣ ଆଉ ତାଙ୍କ ଉପରେ ରୁଷ୍ଟ ନାହାନ୍ତି । ସେ ତାଙ୍କୁ ଅଭିବାଦନ ଜଣାଇ ଚାଲିଗଲେ ।

ଗୋକୁଳର ବିଶିଷ୍ଟ ବ୍ୟକ୍ତିମାନେ ଆସି ଶ୍ରୀକୃଷ୍ଣଙ୍କୁ ଭେଟି କହିଲେ, "ତୁମେ କିଏ, ସେକଥା ଆମେ ଛାର ମଣିଷମାନେ କଳ୍ପନା କରିପାରିବୁଁ ନାହିଁ । ଆମର ଖାଲି ଗୋଟିଏ ଭୟ । ତୁମେ ଆମକୁ ହଠାତ୍ ଦିନେ ଛାଡ଼ି ଚାଲିଯିବ ନାହିଁ ତ ?"

"ମୁଁ ଯିବି କୁଆଡ଼େ ? ଆପଣମାନେ ଗୁରୁଜନ । ମୁଁ ଆପଣମାନଙ୍କ ସନ୍ତାନ । ଆପଣମାନଙ୍କ ନିର୍ଦ୍ଦେଶ ଅମାନ୍ୟ କରିବି କିପରି ?" ଶ୍ରୀକୃଷ୍ଣ ହସି ହସି କହିଲେ ।

ସେ ହସରେ ସେମାନେ ଶାନ୍ତ ହୋଇ ଚାଲିଗଲେ ।





# ସତ୍ୟ ନିଷ୍ଠା

ଜଗନ୍ନାଥ ଓ ଉମାପତି ଦୁଇ ବନ୍ଧୁ କୌଣସି ଏକ ତୀର୍ଥ ଯିବା ଉଦ୍ଦେଶ୍ୟରେ ଚାଲିଥା'ନ୍ତି, ଗ୍ରାମ ଛାଡି ଅଳ୍ପ ଦୂର ଯିବା ପରେ ଭୁମ୍ବଳ ବର୍ଷା ଆରମ୍ଭ ହେବାରୁ ସେମାନେ ନିକଟସ୍ଥ ଏକ ଭଗ୍ନ ମନ୍ଦିରରେ ଆଶ୍ରୟ ନେଲେ । ସେଠାରେ ଦେଖିଲେ ଆଗରୁ ଏକ ସୁନ୍ଦରୀ ଯୁବତୀ ବସି ବସି କାନ୍ଦୁଛି ।

ଦୁଇ ବନ୍ଧୁଙ୍କର ବୟସ ଷାଠିଏ ବର୍ଷରୁ ଊର୍ଦ୍ଧ୍ୱ । ସେମାନେ ଝିଅଟିକୁ ଏପରି ଅବସ୍ଥାରେ ଦେଖି ପଚାରିଲେ, "ଝିଅ ଏ ଭୟଙ୍କର ବର୍ଷା ତୋଫାନରେ ତୁ ଏକେଲା ଏଠି ବସି କାନ୍ଦୁଛୁ କାହିଁକି ?"

ଝିଅଟି ଟିକିଏ ଶଙ୍କିଯାଇ କହିଲା, "ଜୀବନ ପ୍ରତି ମୋର କୌଣସି ଆସକ୍ତି ନାହିଁ । ମୁଁ ଜୀବନ ହାରି ଦେବାକୁ ମନସ୍ଥ କରିହିଁ ରାଜନଗର ଛାଡ଼ି ଏଠାକୁ ଏକା ଚାଲି ଆସିଛି । ବଞ୍ଚିବାକୁ ମୋର ଆଗ୍ରହ ନାହିଁ । ଭଗବାନ୍ ଯଦି ଏପରି କଲେ ଆପଣମାନେ ବା ମୋର କ'ଣ କରିପାରିବେ ?"

ଜଗନ୍ନାଥ କହିଲେ, "ଝିଅ, ରାଜନଗର ଛାଡ଼ି ତୁ ମରିବାକୁ ଯାଉଛୁ ଏମିତି କ'ଣ ବା ତୋ ଜୀବନରେ ଘଟିଛି ?"

ଝିଅଟି କିଛି ସମୟ ଚୁପ୍‌ଚାପ୍ ବସି ରହିଲା ତା'ପରେ ମୁହଁ ଖୋଲି କହିଲା, "ମଉସା, ଆଜି ରାଜାରାଣୀଙ୍କ କଥାବାର୍ତ୍ତାରୁ ବୁଝିଲି ଯେ ସେମାନେ ମୋତେ ରାଜବାହିର କାମଦାମ ବୁଝୁଥିବା ବୁଢ଼ା ଶିବାନନ୍ଦର ପୁଅ ସହିତ ବାହା ଦେବେ । ମୁଁ ଏଥିରେ ଦୁଃଖିତ ହୋଇ ରାଜାଙ୍କୁ ମୋର ଅସମ୍ମତି ଜଣାଇବାରୁ ରାଜା କହିଲେ, "ଗୁଜର ଶିବାନନ୍ଦ ତୋ ପାଇଁ କ'ଣ କରିଛି ତୁ ଜାଣୁନାହିଁ । ତୁ ତା' ପୁଅକୁ ବିବାହ କଲେ କେବଳ ସେ ଋଣ

ସମରେନ୍ଦ୍ର



ଶୁଝିପାରିବୁ ।" ମୁଁ ଜଣେ ଜମିଦାରର ଝିଅ ହୋଇ କିପରି ଜଣେ ଚାକରର ପୁଅକୁ ବିବାହ କରିବି ? ସେଥିପାଇଁ ମୁଁ ଆତ୍ମହତ୍ୟା କରିବାକୁ ଯାଉଥିଲି ।"

ଝିଅଟିର ସବୁକଥା ଶୁଣି ଜଗନ୍ନାଥ କହିଲେ, "ଆରେ ଝିଅ, ତୁ କ'ଣ ଜମିଦାର ଶ୍ୟାମରାୟଙ୍କ ଝିଅ ପ୍ରମିଳା ? ତୋତେହିଁ ମାରିବା ପାଇଁ ସମସ୍ତ ଚେଷ୍ଟା କରି ବିଫଳ ହୋଇ ଧରାପଡ଼ି କାରା-ଗାରରେ ବନ୍ଦୀ ହୋଇ ଆମେ ଦୁହେଁ ଥିଲୁ । ମୁଁ ବନ୍ଦୀ ଥିବାବେଳେ ମୋର ସ୍ତ୍ରୀ ଭଦ୍ରାବତୀ ସବୁ ପାପର ବୋଝ ମୁଣ୍ଡରେ ରଖି ଅନୁତାପ କରି କରି ମରିଗଲା, ସେ ତରିଗଲା । ଆମେ ଦୁହେଁ କାରାଗାରରୁ ମୁକ୍ତ ହୋଇ ନିଜ ନିଜର ପାପର ପ୍ରାୟଶ୍ଚିତ୍ତ କରିବାକୁ ତୀର୍ଥାଟନ କରିବାକୁ ବାହାରିଥିଲୁ ।"

"ଆଉ ସେଦିନ ଯଦି ଶିବାନନ୍ଦ ମୋତେ ବନ୍ଦ କରି ନ ଥା'ନ୍ତା ତେବେ ମୁଁ ତୋତେ ହତ୍ୟା କରିବା ପାଚରେ ଏବେ ମଧ୍ୟ ଲାଗିଥା'ନ୍ତି ।" ଉମାପତି କହିଲେ ।

"ମୁଁ ବୁଝିପାରୁ ନାହିଁ କାହିଁକି ଆପଣମାନେ ମଧ୍ୟ ରାଜାଙ୍କ ପରି ଶିବାନନ୍ଦଙ୍କୁ ଏତେ ପ୍ରଶଂସା କରୁଛନ୍ତି ।" ପ୍ରମିଳା କହିଲା ।

ତା କଥା ଶୁଣି ଜଗନ୍ନାଥ କହିଲେ, "ଝିଅ ତୁ ମନଦେଇ ସବୁକଥା ଶୁଣ । ଥରେ ତୋ ବାବା ବଡ଼ ଅସୁସ୍ଥ ହୋଇ ପଡ଼ିଲେ, ତୋର ମା' ବହୁ ପୂର୍ବରୁ ମରିଯାଇଥା'ନ୍ତି । ବୈଦ୍ୟ ବହୁତ ଚେଷ୍ଟା କଲେ ବଞ୍ଚାଇବାକୁ । କିନ୍ତୁ ସେ ଯେତେବେଳେ ଦେଖିଲେ ଆଉ ବଞ୍ଚିବାର ଆଶା ନାହିଁ, ତୋ କଥା ଭାବି ସେ ବହୁତ ବ୍ୟସ୍ତ ହେଲେ । ନିଜ ବନ୍ଧୁବାନ୍ଧବଙ୍କ ଉପରେ ତାଙ୍କର ବିଶ୍ୱାସ ନଥିଲା ତେଣୁ ସେ ତାଙ୍କ ଦେୱାନ ଉମାପତି ଓ ବନ୍ଧୁ ଜଗନ୍ନାଥଙ୍କୁ ପାଖକୁ ଡାକି ତୋତେ ସେମାନଙ୍କୁ ସମର୍ପି ଦେଇ ଦେହ ତ୍ୟାଗ କଲେ । ମିତ୍ର ଜଗନ୍ନାଥ ହେଲା ବାଳିକା ପ୍ରମିଳାର ଅଭିଭାବକ । ପ୍ରମିଳା ପ୍ରାପ୍ତବୟସ୍କା ହେବା ପର୍ଯ୍ୟନ୍ତ ସମସ୍ତ ଜମିଦାରୀ ଜଗନ୍ନାଥ ହାତରେ ଥାଏ । ତୋ ବାବା ମରିବା ପରେ ପରେହିଁ ଜଗନ୍ନାଥ ଓ ତା' ସ୍ତ୍ରୀ ଭଦ୍ରାବତୀ ଆସି ତାଙ୍କ ଘର ଦଖଲ କଲେ ଓ

ତୋତେ ପାଖରେ ରଖିଲେ । ତା'ପରେ ଦୁହେଁ ମିଶି ତୋତେ ନାନା ପ୍ରକାର କଷ୍ଟ ଦେଲେ ସେମାନେ ଭାବିଲେ ତୁ ମରିଗଲେ ସେମାନେ ନିଷ୍କଣ୍ଟକ ହୋଇ ଜମିଜମା ଭୋଗ କରିବେ ।

ସେମାନଙ୍କର ଏ ଷଡ଼ଯନ୍ତ୍ର ବୁଝିଗଲା ଗୃହକର ଶିବାନନ୍ଦ । ସେ ସବୁ ସମୟରେ ତୋତେ ରକ୍ଷା କରୁଥାଏ ଓ ଆଖି ଉପରେ ରଖିଥାଏ । ସେ ତୋତେ ନିଜ ଝିଅପରି ଭଲ ପାଉଥାଏ । ଏଇ ସମୟରେ ତୋ ବାପାଙ୍କର ପୁରୁଣା ବନ୍ଧୁ ଏ ଦେଶର ରାଜା ରାଜ୍ୟ ଭ୍ରମଣ କରୁ କରୁ ଯାଇ ସେଠାରେ ପହଞ୍ଚିଲେ । ଆଗରୁ ସେ ବନ୍ଧୁଙ୍କ ମୃତ୍ୟୁ ଖବର ପାଇଥିଲେ । ତୋତେ ଦେଖିବା ପାଇଁ ସେ ଆସିଲେ । ତେଣୁ ଭଦ୍ରାବତୀ ତୋତେ ଭଲ କରି ସଜାସଜି କରି ରାଜାଙ୍କ ପାଖକୁ ପଠାଇଲା ଓ ଦୂରରୁ ଥାଇ ସଙ୍କେତ କରୁଥାଏ କି ରାଜା ଯାହା ପଚାରିଲେ ଯେପରି ସବୁ ଭଲ କହିବୁ । ତଥାପି ରାଜାଙ୍କୁ ତୁ ନିର୍ଭୟରେ କହିଲୁ, "ଆପଣଙ୍କ ପରି ବଡ଼ ଲୋକ କେହି ଆସିଲେ ମୋତେ ଏଡ଼େ ସୁନ୍ଦର ପୋଷାକ ପିନ୍ଧାଇ ଦିଆଯାଏ; ନହେଲେ ଅନ୍ୟ ସବୁଦିନ ମୋତେ କେହି ଖାତିର କରନ୍ତି ନାହିଁ ଭଲ କରି ଖାଇବାକୁ ଗଣ୍ଡେ ମଧ୍ୟ ମିଳେନାହିଁ ।"

ରାଜା ଏସବୁ ଶୁଣି ପ୍ରମିଳାର ଅଭିଭାବକଙ୍କୁ ଗାଳି ଧମକ ଦେଇ ଗଲେ । ଏକଥାରେ ଭଦ୍ରାବତୀ ରାଗିଯାଇ ତୋତେ ରାତିରେ




ଗୋଦାମ ଘରେ ଭର୍ତ୍ତି କରି ଲଙ୍କାମରିଚ ଧୂଆଁ ଦେଲା । ତୋତେ ସକାଳୁ ଶିବାନନ୍ଦ ବେହୋସ ଅବସ୍ଥାରେ ଉଦ୍ଧାର କଲା । ତା'ପରେ ତା'ରି ପ୍ରଯତ୍ନରେ ତୁ ସୁସ୍ଥ ହେଲୁ ।

ପରଦିନ ଜଗନ୍ନାଥ ଜଣେ ବୈଦ୍ୟଙ୍କୁ କିଛି ଟଙ୍କା ଲାଞ୍ଚ ଦେଇ ବିଷ ଔଷଧ ଆଣି ତୋତେ ମାରିଦେବାକୁ ଚେଷ୍ଟା କଲା । ବୈଦ୍ୟ ପ୍ରଥମେ ଅସମ୍ମତ ହେଉଥିଲା କାରଣ ସେ ଜାଣିଥିଲା ଏକଥା ପ୍ରକଟ ହେଲେ ରାଜା ହୁଏତ ତାକୁ ମୃତ୍ୟୁଦଣ୍ଡ ଦେବେ । କିନ୍ତୁ ଟଙ୍କାର ଲୋଭ ଏଡ଼ାଇ ନପାରି କହିଲା, "ଠିକ୍ ଅଛି, ମୁଁ ଔଷଧ ନାମରେ ବିଷ ପଠାଇଦେବି । ବିଷ ପ୍ରୟୋଗ କରିବାର ଦାୟିତ୍ୱ ତମର ।"




ଦୁଇଦିନ ପରେ ଜଗନ୍ନାଥ ଶିବାନନ୍ଦକୁ ଡାକି କହିଲେ କି ପ୍ରମିଳାର ଦେହ ଖରାପ; ସେ ଯେପରି ଔଷଧ ନେଇଆସେ । ଶିବାନନ୍ଦ ବୈଦ୍ୟଠାରୁ ଔଷଧ ଆଣିଲା ସତ, କିନ୍ତୁ ମନରେ ସନ୍ଦେହ ହେବାରୁ ରାସ୍ତାରେ ସେ ଔଷଧ ଫିଙ୍ଗି ଦେଇ ଚନ୍ଦନଗୁଳା ନେଇ ଆସିଲା । ତଦ୍ୱାରା ତୋର କୌଣସି ହାନୀ ନ ଘଟିବାରୁ ଜଗନ୍ନାଥ ଗ୍ରାମର ତାନ୍ତ୍ରିକକୁ ଡାକି ମିଛରେ ଭୂତ ଲାଗିଛି କହି କିଛି କ୍ରିୟାନୁଷ୍ଠାନ କଲା ସଦ୍ୱାରା ସେ ଶୀଘ୍ର ମରିଯିବ । ଏସବୁ ଶିବାନନ୍ଦ ବୁଝିଗଲା କିନ୍ତୁ ତା' କଥାର ମୂଲ୍ୟ ବା କିଏ ଦେବ । ସେଦିନ ରାତିରେ ତୋତେ ଉଠାଇ ନେଇ ତୋ ବାପାର ଜଣେ ବନ୍ଧୁଙ୍କ ଘରେ ଛାଡ଼ି ଆସିଲା । ଏକଥା କେହି ଜାଣିପାରିଲେ ନାହିଁ । ସକାଳ ହେବାରୁ ବହୁତ ଖୋଜାଖୋଜି କରି ତୋତେ ପାଇଲେ ନାହିଁ । ଏଣେ ଗ୍ରାମର ଲୋକେ ବହୁତ ଉତ୍ତ୍ୟକ୍ତ ହୋଇ ଉଠିଲେ କାରଣ ତୋର ବାପା ତାଙ୍କ ଜୀବନକାଳରେ ଖୁବ୍ ଜନପ୍ରିୟ ଥିଲେ । ଲୋକମାନେ ଯାଇ ରାଜାଙ୍କ ପାଖରେ ଏକଥା କହିଲେ । ରାଜା ସବୁ ଶୁଣି ଜଗନ୍ନାଥ, ତା' ସ୍ତ୍ରୀ ଭଦ୍ରାବତୀ ଓ ଉମାପତି, ତିନିଜଣଙ୍କୁ କାରାଗାରରେ ବନ୍ଦୀ କରି ରଖିଲେ ।

କିଛିଦିନ ପରେ ଶିବାନନ୍ଦ ରାଜାଙ୍କ ପାଖକୁ ଯାଇ ପ୍ରମିଳାକୁ ତାଙ୍କ ହାତରେ ସମର୍ପଣ କରି କହିଲା, "ପ୍ରଭୁ, ସମ୍ପତ୍ତିର ପ୍ରଲୋଭନରେ ପଡ଼ି ସେହି ଦୁଷ୍ଟମାନେ ବାଳକାଟିକୁ ମାରିଦେବା ପାଇଁ ବାରମ୍ବାର ଚେଷ୍ଟା କରିଥିଲେ । ମୁଁ ସେସବୁ ଜାଣିପାରି ତାକୁ ଲୁଚାଇ ରଖିଥିଲି । ଏଣିକି ତା' ଦାୟିତ୍ୱ ଆପଣଙ୍କର ।" ତା'ପରେ ସେ ରାଜାଙ୍କୁ ଆରମ୍ଭରୁ ଘଟିଥିବା ସବୁ କଥା କହିଲା ।

ରାଜା କହିଲେ, "ଏବେ ତ ସେମାନେ ବନ୍ଦୀ, ତମେହିଁ ଝିଅଟିର ସବୁ ଦାୟିତ୍ୱ ନେଇ ତାକୁ ପାଳନ କର ।"

ଶିବାନନ୍ଦ କହିଲା, "ମହାରାଜ, ସମ୍ପତ୍ତିର ପ୍ରଲୋଭନରେ ପଡ଼ି ହୁଏତ ଅନ୍ୟ କିଏ ତା'ର ଓ ମୋର କ୍ଷତି କରିପାରେ । ତେଣୁ ଆପଣ ତାକୁ ଏଇଠାରେ ନିଜ ଦୃଷ୍ଟି ଉପରେ ରଖନ୍ତୁ । ପ୍ରାପ୍ତବୟସ୍କା ହୋଇଗଲେ ତା'ର ବିବାହ ଦେବେ ।"

ରାଜା ଶିବାନନ୍ଦର କଥା ସ୍ୱୀକାର କରି ବାଲକାଟିକୁ ରାଣୀହଂସପୁରରେ ରଖିଲେ । ଶିବାନନ୍ଦ ଜମିଦାରୀ ବୁଝାବୁଝି କରି ଟଙ୍କା ରାଜାଙ୍କ ପାଖକୁ ପଠାଉଥାଏ । ସେଦିନ ଗୁଡ଼ିକ ତୋ ପାଇଁ କେତେ ବିପତ୍ତିଜନକ ହୋଇଥିଲା ତାହା ତୁ କଳ୍ପନା ମଧ୍ୟ କରିପାରିବୁ ନାହିଁ । ଶିବାନନ୍ଦ ସର୍ବଦା ଭଗବାନଙ୍କ ପ୍ରତିନିଧି ଭାବରେ ତୋତେ ରକ୍ଷା କରୁଥାଏ । ଆଉ ଆଜି ତୋ ସହିତ ଦେଖା ହେଲା ତାହା ମଧ୍ୟ ଭଗବାନ୍‌ଙ୍କ କୃପା । ଆମେ ଦୁଇଜଣ ସେହି ପୂର୍ବବର୍ଣ୍ଣିତ ଦୁଇ ହତଭାଗ୍ୟ ମୁଁ ଜଗନ୍ନାଥ ଓ ସେ ଉମାପତି ।

କାରାଗାରରେ ସ୍ତ୍ରୀ ମଲା । ଆମେ ଦୁହେଁ ତୋ ବାପାର ମିତ୍ର ହୋଇ ଧନର ପ୍ରଲୋଭନରେ ଯେଉଁ ପାପ କରିଥିଲୁ ସେଥିପାଇଁ ସମଗ୍ର ବନ୍ଦୀ ଜୀବନଟି ପଶ୍ଚାତାପରେହିଁ କଟିଥିଲୁ । ଏବେ ଠିକ୍ ସମୟରେ ତୋର ଜୀବନ ରକ୍ଷା କରିବାରୁ ଜାଣୁଛୁ ଭଗବାନ୍ ଆମକୁ କ୍ଷମା କରିଛନ୍ତି ।

ଏବେ ଜଗନ୍ନାଥ ମୁହଁରୁ ସବୁକଥା ଶୁଣି ପ୍ରମିଳାର ଆଖିରୁ ଲୁହ ବୋହିଲା । ସେ କହିଲା ଶିବାନନ୍ଦ କାକାଙ୍କର ମୋ ପ୍ରତି ସ୍ନେହ ବିଷୟ ମୁଁ ଜାଣିଥିଲି ଯେ କିନ୍ତୁ ଏସବୁ କଥା ଜାଣି ତାଙ୍କ ପ୍ରତି କୃତଜ୍ଞତାରେ ମୋ ମନ ପୁରି ଉଠୁଛି । ଏବେ ତାଙ୍କ ପୁଅକୁ ବିବାହ କରିବା ପାଇଁ ମୁଁ ସ୍ୱୀକାର କରୁଛି । ଆପଣମାନଙ୍କ ଭିତରୁ ଜଣେ ରାଜାଙ୍କ ପାଖକୁ ଯାଇ ମୋର କୁଶଳ ସମାଚାର କୁହନ୍ତୁ । ଆଉ ଜଣେ ମୋ ସହିତ ଗ୍ରାମକୁ ଚାଲନ୍ତୁ ଏ ଶୁଭ ଖବର ଶିବାନନ୍ଦ କାକାକୁ ଜଣାଇବା । ମୋ ମନରେ ଆଉ କୌଣସି ଦୁଃଖ ନାହିଁ । ମୋ ବିବାହରେ ଆପଣ ଦୁଇଜଣ ଆସି ଆମକୁ ଆଶିର୍ବାଦ କରିବେ ।"

ସେତେବେଳକୁ ବର୍ଷା ସଂପୂର୍ଣ୍ଣ ଛାଡି ଯାଇଥିଲା । ପୂର୍ବ ନିର୍ଦ୍ଧାରିତ ଯୋଜନା ଅନୁସାରେ ଉମାପତି ରାଜାଙ୍କ ପାଖକୁ ଗଲେ; ଜଗନ୍ନାଥ ଓ ପ୍ରମିଳା ଗ୍ରାମକୁ ଗଲେ ।





# ରାଜକୁମାରୀ ସୌଦାମିନୀ

ଚନ୍ଦନ ଦେଶର ରାଜା ଥିଲେ ଅନଙ୍ଗ ବର୍ମା । ତାଙ୍କର ସୌଦାମିନୀ ଥିଲା ଏକମାତ୍ର ସନ୍ତାନ । ଝିଅଟି ଦୁଇବର୍ଷର ହୋଇଛି ତା'ର ମା' ମରିଗଲେ । ଝିଅଟିକୁ ଚାହିଁ ରାଜା ଆଉ ଦ୍ୱିତୀୟଥର ବିବାହ କଲେ ନାହିଁ । ଝିଅଟିକୁ ଅତି ଆଦରରେ ପାଳୁଥାନ୍ତି; ମା' ବାପା ଦୁହିଁଙ୍କର ସ୍ନେହ ଓ ଯତ୍ନ ସେହିଁ କରୁଥା'ନ୍ତି ।

କ୍ରମେ ସୌଦାମିନୀ ବଡ ହେଲା । ରୂପ ଓ ଗୁଣରେ ସେ ଅଦ୍ୱିତୀୟା ହୋଇ ଉଠିଲା । ତା'ର ଶିକ୍ଷାଦୀକ୍ଷା ରାଜା ଖୁବ୍ ଭଲ ଭାବରେ କରାଇଲେ । ଅଳ୍ପ ସମୟ ମଧ୍ୟରେ ସେ ଅନେକ କଳା ଓ ଅନେକ ବିଦ୍ୟାରେ ନିପୁଣ ହୋଇ ଉଠିଲା । ରାଜା ତାକୁ ଖୁବ୍ ଆଦର କରୁଥା'ନ୍ତି ।

ଦିନେ ରାଜା ହାତରେ ଅନେକ ଗୁଡ଼ାଏ ଚିତ୍ରପଟ ଓ ତାଳପତ୍ର ଲେଖା ଧରି ଆସି ଝିଅ ପାଖରେ ପହଞ୍ଚି କହିଲେ, "ଦେଖ୍ ଝିଅ ଏବେ ତୋ'ର ବିବାହ ଯୋଗ୍ୟ ବୟସ ହୋଇଗଲାଣି । ଏଇ ସବୁ ଚିତ୍ରପଟ ଗୁଡ଼ିକ ବିଭିନ୍ନ ଦେଶର ରାଜକୁମାରମାନଙ୍କର ଓ ଏଇ ତାଳପତ୍ର ପୋଥିରେ ସେମାନଙ୍କ ନାମ, ଧାମ, ବଂଶ ଗୁଣ ଇତ୍ୟାଦି ବିଷୟରେ ସବୁ ଲେଖା ହୋଇଛି । ତୁ ଯାହାକୁ ପସନ୍ଦ କରିବୁ, ମୁଁ ତା' ସହିତ ତୋର ଶିଘ୍ର ବିବାହ ଦେଇଦେବି । ଭାବି ଦେଖିବୁ ଯେ ସେ କେବଳ ତୋର ସ୍ୱାମୀ ହେବ ନାହିଁ, ପୁଣି ମୋ ପରେ ଏ ଦେଶର ରାଜା ମଧ୍ୟ ହେବ ।"

ସୌଦାମିନୀ ଚିତ୍ରପଟ ଓ ପୋଥି ସବୁ ରଖିଦେଇ ଟିକିଏ ଚିନ୍ତାମଗ୍ନ ହେଲା । ତା'ପରେ କହିଲା, "ବାବା ମୋର ଭାବି-ସ୍ୱାମୀର ସୌନ୍ଦର୍ଯ୍ୟ, ବୀରତ୍ୱ, ଗୁଣ ଇତ୍ୟାଦି ବିଷୟରେ କିଛି ଭାବିବା ଦରକାର ନାହିଁ । ସେ ବିଷୟ ଆପଣ ବିଚାର କରିବେ । କିନ୍ତୁ

ତା' ପୂର୍ବରୁ ମୁଁ ମଧ୍ୟ ରାଜକୁମାରମାନଙ୍କର ଗୁଣ ସବୁକୁ ପରୀକ୍ଷା କରି ଦେଖିବି । ସେଥିରେ ଯିଏ ସଫଳ ହେବ ସେହିଁ ମୋର ସ୍ୱାମୀ ହେବ । ମୋ ମତରେ ସଦ୍‌ଗୁଣ, ଓ ସଚ୍ଚରିତ୍ରହିଁ ସବୁଠାରୁ ମୂଲ୍ୟବାନ୍ । ସେକଥା ମୁଁ ପରୀକ୍ଷା କରି ମତ ଦେବି ।"

ଝିଅର କଥା ଶୁଣି ରାଜା ଆନନ୍ଦିତ ହୋଇ କହିଲେ, "ଝିଅ ତୁ ଯାହା କହୁଛୁ ମୁଁ ସେଥିରେ ରାଜି । କିନ୍ତୁ ଜଣଙ୍କର ସ୍ୱଭାବ ଚରିତ୍ର ଜାଣିବା ଏତେ ସହଜ କଥା ନୁହେଁ । ତୁ କେଉଁ ଉପାୟରେ ସେସବୁ ନିର୍ଣ୍ଣୟ କରିବୁ ?"

"ବାବା, ମୁଁ ଆପଣଙ୍କୁ ଗୋଟିଏ ଗଳ୍ପ କହିବି । ଆପଣ ସେ ଗଳ୍ପଟି ମୋତେ ବିବାହ କରିବାକୁ ଆସିଥିବା ପ୍ରାର୍ଥୀଙ୍କୁ କହିବେ । ତା'ପରେ ସେ ଗଳ୍ପରେ ଯେଉଁ ସମସ୍ୟା ସବୁ ଅଛି ତାକୁ କିଏ କେଉଁ ଭାବରେ ସମାଧାନ କରୁଛି ସେଇଥିରୁ ମୁଁ ସବୁକିଛି ଅନୁମାନ କରିନେବି । ଏବେ ଗଳ୍ପଟି କହୁଛି ଶୁଣନ୍ତୁ"—ସୌଦାମିନୀ କହି ଚାଲିଲା ।

"ପ୍ରାଚୀନ କାଳରେ ବତ୍ସଳ ଦେଶରେ ଚନ୍ଦ୍ରସେନ ନାମକ ରାଜା ରାଜତ୍ୱ କରୁଥା'ନ୍ତି । ତାଙ୍କର କନକପ୍ରଭା ନାମକ ଏକ ସୁନ୍ଦରୀ ଝିଅ ଥାଏ ।

ଥରେ ଚନ୍ଦ୍ରସେନଙ୍କର ମିତ୍ର ରାଜା ପାଥସିଂହ କୌଣସି ଏକ ଉତ୍ସବ ଉପଲକ୍ଷେ ବତ୍ସଳ ଦେଶକୁ ଆସିଥା'ନ୍ତି । ବିଶ୍ରାମ କକ୍ଷରେ ଦୁଇ



ବନ୍ଧୁ କଥାବାର୍ତ୍ତା କରୁ କରୁ ହଠାତ୍ କାନ୍ଥରେ ଟଙ୍ଗା ହୋଇଥିବା ଚିତ୍ରମାନଙ୍କ ମଧ୍ୟରୁ ଗୋଟିଏ ସୁନ୍ଦରୀ ନାରୀର ଚିତ୍ର ପାର୍ଥ ସିଂହଙ୍କ ଦୃଷ୍ଟି ଆକର୍ଷଣ କଲା । ପାର୍ଥସିଂହ ବହୁ ସମୟ ଧରି ଚିତ୍ରଟିକୁ ଲକ୍ଷ୍ୟ କରିବାରୁ ଚନ୍ଦ୍ରସେନ ପଚାରିଲେ, "କ'ଣ ବନ୍ଧୁ ସେ ଚିତ୍ରଟିରେ ଥିବା ନାରୀର ସୌନ୍ଦର୍ଯ୍ୟ ଆପଣଙ୍କୁ ମୁଗ୍ଧ କରିଛି ନା ?"

ଅଳ୍ପ ହସି ପାର୍ଥସିଂହ କହିଲେ, "ନା, ନାରୀର ସୌନ୍ଦର୍ଯ୍ୟ ନୁହେଁ, କଳାକାରର କୁଶଳୀ ହାତ । ଏତେ ଚମତ୍କାର ଚିତ୍ର ଜଣେ-ବାମ ହାତରେ ଆଙ୍କିପାରେ ମୁଁ ଭାବି ନଥିଲି ।"

"ଅସମ୍ଭବ, କିଏ କହିଲା ଏ ଚିତ୍ରଟି ବାମ ହାତରେ ଅଙ୍କା ହୋଇଛି ? ମୁଁ ନିଜେ



ଦେଖିଛୁ ଚିତ୍ରକାର ଦକ୍ଷିଣ ହାତରେ ତୁଳୀ ଧରିଥିବାର।" ଉତ୍ତ୍ୟକ୍ତ ହୋଇ କହିଲେ ଚନ୍ଦ୍ରସେନ।

"ଆପଣ ତୁଳି ଧରିବାର ଦେଖିଛନ୍ତି ଆଙ୍କିବାର ନୁହେଁ। ଯଦି ବି ଆଙ୍କିବାର ଦେଖିଥିବେ ତେବେ ଅଳ୍ପ କେତେ ଅଂଶ ସେ ଆପଣଙ୍କ ସାମନାରେ ସେପରି କରିଛି। କିନ୍ତୁ ବାସ୍ତବରେ ଏହା ବାମହାତରେ ଅଙ୍କା ଚିତ୍ର।" ପାର୍ଥସିଂହ କହିଲେ।"

"ଠିକ୍ ଅଛି। ମୁଁ କଳାକାର ବିହାରିଙ୍କୁ ଡାକି ଏବେ ସବୁକଥା ବୁଝିନେବି। ଯଦି ମୁଁ ହାରିଯାଏ ତେବେ ମୋ ଝିଅକୁ ଆପଣଙ୍କ ପୁଅକୁ ବିବାହ ଦେବି।" ଚନ୍ଦ୍ରସେନ କହିଲେ।

"ଆଉ ଯଦି ମୁଁ ହାରିଯାଏ, ତେବେ ମୋ ଜୀବନ ଥିବା ପର୍ଯ୍ୟନ୍ତ ମୁଁ ମୋର ରାଜକୋଷରୁ ପ୍ରତ୍ୟେକ ବର୍ଷ ପଚିଶ ହଜାର ସ୍ୱର୍ଣ୍ଣମୁଦ୍ରା ତୁମ ରାଜ୍ୟର ଉନ୍ନତି ସକାଶେ ଦେବି।" ପାର୍ଥସିଂହ କହିଲେ।

ଏହାପରେ ରାଜା ଚନ୍ଦ୍ରସେନ ଚିତ୍ରଟିର କଳାକାର ବିହାରିଙ୍କୁ ଡକାଇ ପଠାଇଲେ। ବିହାରିଙ୍କୁ ଦେଖି ରାଜା ତତ୍କ୍ଷଣାତ୍ ପଚାରିଲେ—

"ଆଚ୍ଛା ଏ ଚିତ୍ରଟି ତମେ କିପରି ଆଙ୍କିଛ ?"

"ଆଜ୍ଞା, ସବୁ କଳାକାର ଯେପରି ଆଙ୍କନ୍ତି।" ବିହାରି କହିଲେ।

"ମୁଁ ଜାଣିବାକୁ ଚାହେଁ ତମେ କେଉଁ ହାତରେ ଆଙ୍କିଛ ?" ରାଜା କହିଲେ।

"ଆଜ୍ଞା ?" ଟିକିଏ ଇତସ୍ତତଃ ହୋଇ ସେ ସ୍ୱୀକାର କଲେ, "ମୁଁ ସେଇଟି ବାମ ହାତରେହିଁ ଆଙ୍କିଛି।"

ବିହାରି ସେଠାରୁ ଚାଲିଯିବା ପରେ ଚନ୍ଦ୍ରସେନ କହିଲେ, ବନ୍ଧୁ, ମୁଁ ହାରିଗଲି ସିନା କିନ୍ତୁ ଆମର ବନ୍ଧୁତ୍ୱ ଏବେ ଚିରନ୍ତନ ହୋଇ ରହିବ। ଏବେ ମୁଁ ରାଣୀ ଓ ଜେମାକୁ ସବୁକଥା କହି ଶୁଭଲଗ୍ନ ଖୋଜି ବିବାହର ଆୟୋଜନ କରିବି।" ପାର୍ଥସିଂହ ଆନନ୍ଦରେ ଏକଥା ସ୍ୱୀକାର କଲେ।

ଠିକ୍ ସେହିଦିନ ଆଉ ଗୋଟିଏ ଘଟଣା ଘଟିଥାଏ। ରାଣୀ ଦେବୀ ମନ୍ଦିରରୁ ପୂଜା କରି

ଫେରୁଥା'ନ୍ତି, ଗୁଇଜଣ ଡ଼ାକୁ ହଠାତ୍ ତାଙ୍କ ସବାରି ଆକ୍ରମଣ କରି ରାଣୀଙ୍କଠାରୁ ଅଳଙ୍କାର ସବୁ ନେବାକୁ ଯାଉଛନ୍ତି; ସେତିକିବେଳେ ଜଣେ ଯୁବକ ସେଠାରେ ବିଜୁଳି ବେଗରେ ପହଞ୍ଚି ଯାଇ ସେମାନଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ବନ୍ଦୀ କଲା ।

ରାଣୀ ଯୁବକକୁ ପଚାରିଲେ, "ପୁଅ, ତମେ କିଏ ? ମୋତେ ଏ ଭୟଙ୍କର ବିପଦରୁ ଉଦ୍ଧାର କଲ; ମୋତେ ତୁମର ନାମ ପରିଚୟ ଦିଅ ।"

ଯୁବକଟି ବିନୟ ପୂର୍ବକ କହିଲା, "ମା', ମୋ ନାମ ହେଉଛି ରାଜଶେଖର । ମୁଁ ଆପଣଙ୍କ ସେନାପତି ବିକ୍ରମବର୍ମାଙ୍କ ଭଣଜା ।"

"ଓହୋ, ମୁଁ ତମ କଥା ଶୁଣିଛି । ତମକୁ ତ ତମ ମାମୁଁ ପିଲାଟି ଦିନରୁ ନିଜ ପୁଅ ପରି ପାଳିଛନ୍ତି । ଶୁଣିଛି ତମେ ଉଚ୍ଚ ଶିକ୍ଷା ପାଇଁ କାଶୀ ଯାତ୍ରା କରିଥିଲ ।" ରାଣୀ କହିଲେ ।

"ଆଜ୍ଞା, ଏବେ ଏକ ସପ୍ତାହ ପୂର୍ବେ ମୁଁ ବିଦ୍ୟାଧାମ କାଶୀରେ ଉଚ୍ଚଶିକ୍ଷା ସମାପ୍ତ କରି ଫେରିଛି ।" ରାଜଶେଖର କହିଲା ।

"ଅତି ଆନନ୍ଦର କଥା, ପୁଅ ତୁମେ ଆଜି ମୋ ଜୀବନ ରକ୍ଷା କରିବାରୁ ମୁଁ ତୁମ ପାଖରେ ଋଣୀ । ଏ ଋଣ ମୁଁ ପରିଶୋଧ କରିବି, ମୋ ପାଖରେ ଥିବା ଅମୂଲ୍ୟ ରତ୍ନ ତୁମକୁ ଦେବା ଦ୍ୱାରା ।" ଏତିକି କହି ରାଣୀ ନବରକୁ ଫେରିଗଲେ ।

ରାଣୀଙ୍କ କଥା କହିବା ଭଙ୍ଗୀରୁ ସେ ଜାଣି-ପାରିଲା ଯେ ରାଣୀଙ୍କର ଇଚ୍ଛା ତାକୁ ତାଙ୍କର ଜାମାତା କରିବେ । ଯେତେବେଳେ କନକ-





# ଧନର ମୂଲ୍ୟ

ବିମଳାନନ୍ଦ ନାମକ ଜଣେ ସାଧୁ ଶିଷ୍ୟଗଣଙ୍କ ସହ ତୀର୍ଥାଟନ କରିବାକୁ ଯାଉଥା'ନ୍ତି । ବାଟରେ ଗୋଟିଏ ଗ୍ରାମରେ ସେ ପାଞ୍ଚଦିନ ବିଶ୍ରାମ କଲେ । ସେ ଗ୍ରାମର ସବୁଠାରୁ ବଡ଼ ଧନୀ ଥିଲେ ଲିଙ୍ଗରାଜ । ଧନୀ ଥିଲେ ମଧ୍ୟ ସେ ଥିଲେ ଧାର୍ମିକ । ତେଣୁ ସେ ସାଧୁ ଓ ତାଙ୍କ ଶିଷ୍ୟଗଣଙ୍କର ଖିଆପିଆ, ରହିବା ଖର୍ଚ୍ଚ ବହନ କଲେ ଓ ସାଧୁସେବା ମଧ୍ୟ କଲେ ।

ଯିବାଦିନ ସାଧୁ ଗ୍ରାମବାସୀମାନଙ୍କୁ ଆଶୀର୍ବାଦ ଦେଲେ । ଶେଷରେ ଲିଙ୍ଗରାଜଙ୍କୁ ଆଶୀର୍ବାଦ ଦେଇ କହିଲେ, "ବତ୍ସ, ତମେ ଜନ୍ମରୁହିଁ ଧନୀ, ସମସ୍ତ ପ୍ରକାର ସୁଖ ସମ୍ପଦରେ ପୂର୍ଣ୍ଣ । ଆଉ ତୁମର କିଛି ବାକି ଅଛି କି ଯେଉଁଥିପାଇଁ ତମେ ମୋର ସେବା କରୁଛ ?"

ଏକଥା ଶୁଣି ଲିଙ୍ଗରାଜ କହିଲେ, "ସାଧୁ ମହାରାଜ, ମୋର ଯେତେ ଧନ ଥିଲେ ମଧ୍ୟ ସାଧୁସେବାଠାରୁ ବଳି ଆଉ କିଛି ଐଶ୍ୱର୍ଯ୍ୟ ଥାଇପାରେ ? ଧନର ମୂଲ୍ୟ କ'ଣ ? ସାଧୁ-ସେବାର ପ୍ରକୃତ ମୂଲ୍ୟ ଅଛି । ମୋର ଆଉ କିଛି କାମନା ନାହିଁ ।"

ଏକଥା ଶୁଣି ସାଧୁ ତାଙ୍କୁ ଖୁବ୍ ପ୍ରଶଂସା କଲେ । ଏଇ ସମୟରେ ସେଠାରେ ମଙ୍ଗରାଜ ନାମକ ଜଣେ ବ୍ୟକ୍ତି ଉପସ୍ଥିତ ହୋଇ କହିଲେ, "ସାଧୁଜୀ, ମୋ ମନରେ ଗୋଟିଏ ସନ୍ଦେହ ଅଛି । କିଛି ବିଚାର ନ କରି ବି ତ ଜଣେ କହିଦେଇ ପାରେ କି ଧନର ମୂଲ୍ୟ କିଛି ନାହିଁ !"

ସାଧୁ କହିଲେ, "କାହିଁକି ତୁମର ଏ ସନ୍ଦେହ ହେଲା ?"

"ପ୍ରଭୁ, ସାରାଦିନ ଖଟି ଖଟି ମୁଁ ପରିବାରକୁ ଚଳାଇ ପାରୁନାହିଁ । ଏ ଗ୍ରାମରେ ଅଧିକାଂଶ ଲୋକ ମୋରି ଭଳି ଅନେକ କଷ୍ଟରେ

କୌଣସି ପ୍ରକାରେ ବଞ୍ଚି ରହିଛନ୍ତି । ଏ ପରିସ୍ଥିତିରେ 'ଧନର ମୂଲ୍ୟ ନାହିଁ' ଏକଥା କେବଳ ଲିଙ୍ଗରାଜଙ୍କ ପରି ଧନୀ ବ୍ୟକ୍ତି କହିପାରିବେ, ସମସ୍ତେ ନୁହେଁ । ଆମ ପାଇଁ ତ ଧନ ପ୍ରଧାନ ଜିନିଷ ।"

ଏକଥା ଶୁଣି ସେଠାରେ ଉପସ୍ଥିତ ଗ୍ରାମବାସୀମାନେ ହସି ପକାଇଲେ । ଲିଙ୍ଗରାଜ ମୁଣ୍ଡ ତଳକୁ କଲେ ।

ସାଧୁ କହିଲେ, "ଏଥିରେ ହସିବାର କିଛି ନାହିଁ । ଧନର ମୂଲ୍ୟ ଅଛି ଯଦି ତାହା ଭଲ ଭାବରେ ଖର୍ଚ୍ଚ ହୁଏ । ଏବେ ଲିଙ୍ଗରାଜ ତା'ର ଧନ ଯଦି ପରଉପକାର ପାଇଁ ଖର୍ଚ୍ଚ କରେ ତେବେ ତାହା ଲିଙ୍ଗରାଜ ଚରିତ୍ରର ମହତ୍ତ୍ୱ ପ୍ରତିପାଦନ କରିବ । ଯଦି ଧନ ଗଚ୍ଛିତ ହୋଇ ରଖା ହୁଏ ତେବେ ତାହା ମାଟି ସହିତ ସମାନ ।"

ପୁଣି ଲିଙ୍ଗରାଜଙ୍କ କାନ୍ଧରେ ହାତ ରଖି ସାଧୁ କହିଲେ, "ବତ୍ସ, ତୁମର ନିଷ୍କାମ ସେବାରେ ମୁଁ ସନ୍ତୁଷ୍ଟ । ତମେ ତମର ଧନର କିଛି ଅଂଶ ଦରିଦ୍ର ଗ୍ରାମବାସୀଙ୍କ ସେବାରେ ଉତ୍ସର୍ଗ କଲେ ତାହା ଆହୁରି ମହାନ୍ ହୋଇ ଉଠିବ । ଧନ ଈଶ୍ୱରଙ୍କର, ଈଶ୍ୱରଙ୍କର ସମସ୍ତେ ସନ୍ତାନ । ଯାହାର ପ୍ରକୃତ ପ୍ରୟୋଜନ ତାକୁ ସାହାଯ୍ୟ କର, ଈଶ୍ୱରଙ୍କର ସେବା ସେଇଥିରେହିଁ ହେବ । ତୁମର ଧନ ଆହୁରି ଆସୁ ଓ ତୁମର ମହତ୍ ଗୁଣ ଯୋଗୁ ତୁମ ଧନଦ୍ୱାରା ଗ୍ରାମବାସୀମାନେ ଉପକୃତ ହୁଅନ୍ତୁ ।"

ଏତିକି ଆଶୀର୍ବାଦ ଦେଇ ସାଧୁ ତାଙ୍କ ରାସ୍ତାରେ ଗଲେ । ସେହିଦିନଠାରୁ ଲିଙ୍ଗରାଜ ସମସ୍ତଙ୍କୁ ଅକୁଣ୍ଠ ଚିତ୍ତରେ ସାହାଯ୍ୟ କରନ୍ତି । ସେ ଖାଲି ଦାନ ଦେଇ ନିଜ କର୍ତ୍ତବ୍ୟ ସମ୍ପାଦନ କରନ୍ତି ନାହିଁ । କାରଣ ଦାନ ଗ୍ରହଣ କରୁଥିବା ଲୋକ ସେତକ ଖର୍ଚ୍ଚ କରିଦେଇ ପୁଣି ଅଳସୁଆ ହୋଇଯିବ । ଗ୍ରହିତା ଯେପରି ତାଙ୍କ ଦାନକୁ ଉପଯୁକ୍ତ ଭାବରେ ବିନିଯୋଗ କରିବ, ସେ ତାହା ଦେଖନ୍ତି ।






ଆର୍କଟିକ୍ ସାଗରରେ ବରଫର ବଡ଼ ବଡ଼ ପାହାଡ଼ ସବୁ ସ୍ରୋତରେ ପଡ଼ିବା ମାତ୍ରେ ତିନି ସପ୍ତାହ ମଧ୍ୟରେ ତରଳି ଯାନ୍ତି ।




ଭୂମିକମ୍ପ ଯୋଗୁ ସମୁଦ୍ରରେ ଯେଉଁ ସର୍ବଗ୍ରାସୀ ଲଗାଟେ ତରଙ୍ଗମାଳା ଦେଖା ଦିଅନ୍ତି ତାକୁ ସୁନାମୀ କୁହାଯାଏ । ଜାପାନ ପାଖରେ ୧୯୭୧ରେ ୨୮ ଫୁଟ ଉଚ୍ଚ ପୃଥିବୀର ବୃହତ୍ତମ ତରଙ୍ଗ ଦେଖାଯାଇଥିଲା ।




ତାଳବୃକ୍ଷ ପ୍ରାୟ ୨୮୦୦ ପ୍ରକାରର ଅଛି । ଗରମ ଅଞ୍ଚଳରେ ଏହା ଦେଖାଯାଏ । ଏଥିରୁ ମାତ୍ର ଦୁଇପ୍ରକାର ଭଉସ୍ୱେପରେ ଦେଖାଯାଏ ।

# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଅଗଷ୍ଟ ୧୯୮୮ ସଂଖ୍ୟାରେ ପ୍ରକାଶ ପାଇବ



P. S. Rajagopal



A. V. Rangaiah

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜୁନ୍ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ଦିଆଯିବ । ★ ପରିଚୟୋକ୍ତି ସହ ପ୍ରେରକଙ୍କର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଏପ୍ରିଲ '୮୮ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଆମର ଦେହଟି ଫୁଲ ପରି,

ଦ୍ୱିତୀୟ ଚିତ୍ର : ତୁମେ ପୋଖରୀର ଧଳା ପରୀ !

ପୁରସ୍କାର ବିଜୟିନୀ : ଶ୍ରୀମତୀ ସସ୍ମିତା ଦାଶ, ଭୁବନେଶ୍ୱର ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡଲ୍‌ଟନ୍ ଏଜେନ୍‌ସିଜ୍, ଚନ୍ଦାମାମା ବିଲ୍‌ଡିଂସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

ବିଦେଶ ପ୍ରକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେସନସ୍, ଚନ୍ଦାମାମା ବିଲ୍‌ଡିଂସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandama-

# ମାଗଣା!
## ମ୍ୟାଗୀ ଫନ୍ ବୁକ୍!








୨ଟି ଖାଲି ମ
ନୁଡ଼ଲ୍ସ୍ ପ
ବଦଳରେ।

ଆପଣଙ୍କ ନିକଟତମ ଡି
ଯୋଗାଯୋଗ କରନ୍ତୁ
ଏହି କୁପନ ପଠାନ୍ତୁ

ମ୍ୟାଗୀ ଫନ୍ ବୁ
ପୋଷ୍ଟ ବ୍ୟାଗ
ନୂଆ ଦିଲ୍ଲୀ-୧






କ୍ରୀଡ଼ା-କୌତୁକ, ମ୍ୟାଗୀକ୍ଲବ୍, ଗୋଲକ ଧନ୍ଦାମାନ
ଏବଂ ବହୁତ କିଛି !

ମୋର ନାମ:

# ସେରେଲାକ୍ ଅରେଞ୍ଜ




## ...ଙ୍କ ଶିଶୁକୁ ସେରେଲାକ୍ ର ଅଦ୍ୱିତୀୟ ଲାଭ ଆଣିଦେବା ପାଇଁ,—ଯାହାହେଉ, ଆଉ ଏକ ପନ୍ଥା।

...ରେଲାକ୍ ଅରେଞ୍ଜ : ଏଣ୍ଡ ଦୁଧ ସାଙ୍ଗକୁ ୪ ମାସରୁ ଶିଶୁଟିକୁ
...ଦେଇ ଆଉ ଏକ ସେରେଲାକ୍ ହ୍ୱିଟ୍ ଏବଂ ୬ ମାସରୁ

No share prices,
no political fortunes, yet...

**Over 40% of Heritage readers are professionals or executives, 61% from households with a professional / executive as the chief wage earner. Half hold a postgraduate degree or a professional diploma.**

– from an IMRB survey conducted in Oct. 1986




It's an unusual magazine. It has a vision for today and tomorrow.

It features ancient cities and contemporary fiction, culture and scientific developments, instead of filmstar interviews and political gossip. And it has found a growing readership, an IMRB survey reveals. Professionals, executives and their families are reading The Heritage in depth – 40% from cover to cover, 42% more than half the magazine.

More than 80% of The Heritage readers are reading an issue more than once.

And over 90% are slowly building their own Heritage collection.

Isn't it time you discovered why?



# THE HERITAGE



**So much in store, month after month.**

CMP-2155